# UTTARANA

( *Upliftment* )

POEM BY

*KAMALAKANTA LENKA*

ଆଧୁନିକ ଓଡ଼ିଆ ଦୀର୍ଘ କବିତାର

ପରିପ୍ରେକ୍ଷିତରେ "ଉତ୍ତରଣ" — ଅଧ୍ୟାପକ ଅକ୍ଷୟକୁମାର ଦାସ

ଅଭିମତ— ସୀତାକାଂତ ମହାପାତ୍ର

ପ୍ରଚ୍ଛଦ ଶିଳ୍ପୀ— ପ୍ରମୋଦ କୁମାର ମହାଂତି

ପ୍ରକାଶକ—କାଂତ କୁଟୀର, ଇଛାପୁର, ବାଲେଶ୍ୱର

ମୁଦ୍ରିଠଂତ— ଶ୍ରୀପ୍ରେସ, ଭଦ୍ରକ

ପ୍ରକାଶକାଳ—୧୯୭୬, ଡିସେଂବର

ମୂଲ୍ୟ— ଟ ୧-୭୫ ପଇସା
( ଏକଟଂକା ପଚସ୍ତୋରି ପଇସା ମାତ୍ର )

ପରିବେଷକ—ଜଗନ୍ନାଥ ରଥ, ବିନୋଦବିହାରୀ, କଟକ—୨

# କର୍ତ୍ତବ୍ୟର ଅନୁରୋଧରେ

* କବି ସୀତାକାଂତ ମହାପାତ୍ର ଓ ଅଧ୍ୟାପକ ଅକ୍ଷୟ କୁମାର ଦାସ ମୋର ବିନୀତ ଅନୁରୋଧ ରକ୍ଷାକରି ନିଜ ନିଜର ମୂଲ୍ୟବାନ ମତ ଦେଇଛଂତି । ସାହିତ୍ୟିକ ଅଧ୍ୟାପକ କୃଷ୍ଣଚରଣ ବେହେରା "ଉତ୍ତରଣ" ପ୍ରକାଶନରେ ନାନା ଦିଗରୁ ସାହାଯ୍ୟ ଓ ସହାନୁଭୂତି ଜଣାଇଛଂତି । ସଭିଂକୁ ମୋର ବିନମ୍ର ପ୍ରଣାମ ।

* କବି ବନ୍ଧୁ ପ୍ରମୋଦ କୁମାର ମହାଂତି ସ୍ୱେଚ୍ଛାକୃତ ପ୍ରକାଶକ ଅଛଂତି । ତାଂକର ଉଚ୍ଛ୍ୱସିତ ପ୍ରଶଂସା ଜନିତ ଆଂତରିକତାରୁ "ଉତ୍ତରଣ"ର ଆତ୍ମପ୍ରକାଶ ଘଟିଛି । ତାଂକୁ ଓ ତାଂକର ଉଜ୍ଜ୍ୱଳ ପ୍ରତିଭାର ବିରାଟ ସଂଭାବନାକୁ ମୋର ଅକୁଂଠ ସାଧୁବାଦ ।

* ଶେଷରେ—ଯାହାଂକ ଅନୁଗ୍ରହ ଓ ନିଷ୍ପକ୍ଷ ଦୟାରୁ "ଉତ୍ତରଣ"ର ସୃଷ୍ଟି ତାଂକୁ ମୋର ସବୁ ସାମର୍ଥ୍ୟର ସଂବଳ ସମର୍ପି ଦେଉଛି । ... ... ... ସେ ସବୁଦିନ ପାଇଁ ଅଜ୍ଞାତ ରହଂତୁ । ଆଜି ସେହି ଅପରିଚୟର ଭୂମିକା ଭିତରୁ ମୁଁ ମୋର ଆତ୍ମ-ପରିଚୟ ଦିଏଁ ।

* ଏ ପରମ କର୍ତ୍ତବ୍ୟ, ଆଜି କାହିଁ ସ୍ମୃତି ରହିଲାକି ? ରହୁ । ଶୁଭେଚ୍ଛୁମାନଂକ ଇଂଗିତ ନମିତ । ତଥାସ୍ତୁ !

ବିନୀତ

କମଳାକାଂତ ଲେଂକା

# ଅଭିମତ

ଅଧ୍ୟାପକ କମଳାକାଂତ ଲେଂକାଂକ ଦୀର୍ଘ କବିତା 'ଉତ୍ତରଣ' ପଢ଼ିଲି । କବିତାଟି ଚାରୋଟି ଭାଗରେ ବିଭକ୍ତ— ସମ୍ରାଟ୍, ସ୍ୱପ୍ନ-ସଂପୂର୍ଣ୍ଣ, ଉତ୍ତରଣ ଓ ଉପସଂହାର ।

ଦୀର୍ଘ କବିତାର ସଫଳତା ଯେ ଅତ୍ୟଂତ ନିବିଡ଼ ଓ ଶୃଂଖଳାବଦ୍ଧ ଭାବାବେଗ ଏବଂ କାବ୍ୟରୂପ ଉପରେ ପ୍ରଭୂତ ସଂଯମର ଅପେକ୍ଷା ରଖେ ଏଥିରେ ହୁଏ-ତ ଦ୍ୱିମତ ନ ଥାଇ ପାରେ । କେଂନ୍ଦ୍ରମୁଖୀ ଅନୁଭୂତି, ଆବେଗ ଓ ସେ ସବୁକୁ ରୂପାୟନ କରିବା ଦୀର୍ଘ କବିତାରେ ଅପେକ୍ଷାକୃତ କଷ୍ଟ ସାଧ୍ୟ ସୁତରାଂ ଦରକାର କୌଣସି ଏକ କେଂଦ୍ର ଇମେଜ୍ ବା ଆର୍କିଟାଇପ୍ । ଏ ଇମେଜ୍ କୌଣସି ନିର୍ଦ୍ଦିଷ୍ଟ ସମାଜର ଆଦିମ ଅବଚେତନରୁ ସଂଭୂତ ହୋଇପାରେ ବା "ଅଶୀଳ" (ଯେମିତି ପାଉଣ୍ଡ୍ଂକ କ୍ୟାଂଟୋଜ୍‌ରେ ), "ପ୍ରକୃତି" ବା ସେମିତି କିଛି ସାର୍ବଜନୀନ ସତ୍ତା ବା Category ପ୍ରତି ଏକ ନିର୍ଦ୍ଦିଷ୍ଟ ନୈତିକ ପ୍ରତିକ୍ରିୟାର ପରିପ୍ରକାଶ ହୋଇପାରେ । ପାଉଂଡ୍ଂକ "କ୍ୟାଂଟୋଜ୍"ରେ ଅଶୀଳ ଐତିହ୍ୟ ନୁହେଁ ବା ଗବେଷଣା ସାମଗ୍ରୀ ନୁହେଁ । ଋଣଦାନ ଓ ସୁଧ ଆଦାୟ ବା Usury ର ଦର୍ଶନ ଉପରେ ପ୍ରତିଷ୍ଠିତ ଇତିହାସ ହେଉଛି ଏଠି ଐତିହ୍ୟ— ଯାହା ଦିନେ ଥିଲା ଓ ଏବେ ବି ଅଛି । ଯେଉଁଠି ଦୀର୍ଘ କବିତାରେ କେଂଦ୍ର ଇମେଜ୍ ବା ଆର୍କିଟାଇପ୍ ନ ଥାଏ ( ଯାହା ଏକ ନିର୍ଦ୍ଦିଷ୍ଟ ସ୍ଥାନ ଓ ମୁହୂର୍ତ୍ତରେ ବିଶ୍ୱ ତଥା ସମୟକୁ ଏକୀଭୂତ କରିଥାଏ ) ସେଠାରେ ଅନ୍ତତଃ କେତେକ ମୁଖ୍ୟ ପଂକ୍ତି ଥାଏ ଯେଉଁଗୁଡ଼ିକ ଭାବ-ସମୁଦ୍ରର ତରଂଗ-ଶୀର୍ଷ ସଦୃଶ । ସେଗୁଡ଼ିକ ଗୀତିକବିତାର ଉପଯୁକ୍ତ, ଶକ୍ତିଶାଳୀ ଶୈଳୀରେ ଲିଖିତ ହୁଏ । ଯେମିତି ପାଉଂଡ୍ଂକ "କ୍ୟାଂଟୋଜ୍ " । ଜନ୍ ୱେନ୍ଂକ ଭାଷାରେ— " The Cantos move from one lyrical out burst to another by means of a recitation which mingles rough-hewn verse with scraps of dialogue, Verbatim quotations of documents, ideograms,

lists and anything that comes to hand. The technique is recognisable as a cross between the cinematic ( changes of focus, tracking, panning etc ) and the collage."

‘ଉତ୍ତରଣ’ରେ ନିର୍ଦ୍ଦିଷ୍ଟ ଗଭୀର ଭାବାବେଗ, କେନ୍ଦ୍ର ଇମେଜ୍, ଆର୍କିଟାଇପ୍‌ର ସୁସଂହତ ପରିଚୟ ମିଳେ ନା । କାବ୍ୟରୂପ ମଧ୍ୟ ଅନେକାଂଶରେ ବିଶୃଙ୍ଖଳିତ । ମନେ ହୁଏ ଚେଷ୍ଟା ସତ୍ତ୍ୱେ କବି କବିତା ଆରମ୍ଭର ଆବେଗକୁ ଶୃଙ୍ଖଳିତ ଓ ନିର୍ଦ୍ଦିଷ୍ଟ କରି ରଖିପାରି ନାହାନ୍ତି ।

ଶୈଳୀ ଅତ୍ୟଧିକ ଭାବରେ ନାଟକୀୟ ହୋଇ ପଡ଼ିଛି । ତେଣୁ କବିତାଟି ଗଦ୍ୟ ନାଟକ ପରି ଅନେକ କ୍ଷେତ୍ରରେ ମନେ ହେଉଛି । ଶବ୍ଦ ସମ୍ଭାରରେ ଆଟୋପ ଅଛି, ତତ୍ସମର ପ୍ରାଚୁର୍ଯ୍ୟ ଅଛି । କିନ୍ତୁ ଶବ୍ଦ ଗ୍ରନ୍ଥନରେ ଅନେକ ଅନେକ କ୍ଷେତ୍ରରେ ଅସାବଧାନତା ପରିଦୃଷ୍ଟ ହୁଏ ଯାହା ଫଳରେ ଚିତ୍ରକ ବା ରୂପକ ଜରିଆରେ ବ୍ୟକ୍ତି-ନିରପେକ୍ଷ, ନିର୍ଲିପ୍ତ ଭାବପ୍ରକାଶ ସମ୍ଭବ ହୋଇ ନି । ଅନ୍ୟ ପକ୍ଷରେ ଶବ୍ଦର ପରିଆରରେ କବି ଯେ ନିଜେ ବିମୁଗ୍ଧ ଓ ନିଜେ ଲଣ୍ଠନ୍ ମଶାଲ ଧରି ସେ ଶୋଭାଯାତ୍ରାରେ ଆଗେଇ ଯାଉଛନ୍ତି ଏ ଚିନ୍ତା ମନକୁ ବରବର ଆସେ । ନିର୍ଦ୍ଦିଷ୍ଟ, କଠିନ, ସଂଯତ ଶବ୍ଦ — ବ୍ୟବହାରର ଅଭାବରେ ଇମେଜ୍-ଗୁଡ଼ିକ ମଧ୍ୟ ବିଖଣ୍ଡିତ ଓ କ୍ଲିଷ୍ଟ । କୌଣସି ନିର୍ଦ୍ଦିଷ୍ଟ Concrete ରୂପ ସେମାନେ ଦେଇପାରୁ ନାହାନ୍ତି । ନିମ୍ନ ଉଦାହରଣରୁ ଏହା ସ୍ପଷ୍ଟ ପ୍ରତୀୟମାନ ହେବ ଯେ ସଂସ୍କୃତ ବା ତତ୍ସମ ଶବ୍ଦର ବହୁଳ ବ୍ୟବହାର ଓ ସେ ବ୍ୟବହାରରେ ଆବଶ୍ୟକୀୟ ସଂଯମର ଅଭାବ ଇମେଜ୍ ସୃଷ୍ଟିର ପରିପନ୍ଥୀ ହୋଇଛି ।

“ବର୍ତ୍ତମାନ ଅଜ୍ଞତା ନିଷ୍ଫଳ ଓ ଦିଗନ୍ତର ବିବୃତ ଆତ୍ମାରେ ବାଦ୍‌ଶାହୀ ସିନ୍ଧୁର ଅବିଶ୍ରାନ୍ତ ଗତି” ବା “ତୁମମାନଙ୍କର ଆର୍ତ୍ତି ଓ ଦୁର୍ଦ୍ଦମ ସଂଘର୍ଷରେ ମୁଁ ଏକ ସ୍ଖଳିତ ଖିଆଲରେ ଶ୍ରୁତିମଧୁର ରୁକ୍ଷତା” ବା “ତୁମମାନଙ୍କ ସଂଗତିର ଅସଂଗତ ଓ ସାଙ୍କେତିକତାରେ ସ୍ପର୍ଶ-କେନ୍ଦ୍ରିକ ସତ୍ତ୍ୱର ମୁଁ ଏକ ଦୁର୍ବିପାକର ଅନର୍ଗଳ ଆଶୀର୍ବାଦର ପ୍ରମାଣ ।”

ଶବ୍ଦ ବ୍ୟବହାରରେ ସଂଯମର ଅଭାବ ହେତୁ ଉପରୋକ୍ତ ବାକ୍ୟଗୁଡ଼ିକରେ ନିର୍ଦ୍ଦିଷ୍ଟ ବ୍ୟକ୍ତିଗତ ଅନୁଭୂତି, ମିଥ୍, ଅନୁଚିନ୍ତନ ବା ଗଭୀର ଆବେଗରେ କୌଣସି

ସୂଚନା ମିଳେ ନାହିଁ । କବିତାର ଅଧିକାଂଶ କ୍ଷେତ୍ରରେ ଏହା ଆବେଗ, ଶୈଳୀ ଓ ଇମେଜ୍ ସୃଷ୍ଟି କରିଛି । ତା' ଛଡ଼ା ଶିବାଜୀ ଓ ସଗର ବଂଶଧରଙ୍କୁ, କୁଂତୀ ଓ କୈକେୟୀଙ୍କୁ କବିତାର ବିଭିନ୍ନ ଅଂଶରେ ଏକତ୍ର ଅଣାଯାଇଛି । ମାତ୍ର ସେମାନଙ୍କର ସାମାନ୍ୟ ସ୍ପର୍ଶ ବିନ୍ଦୁ କେଉଁଠି ତାହା ଆଦୌ ସ୍ପଷ୍ଟ ବା ନିର୍ଦ୍ଦିଷ୍ଟ ନୁହେଁ । "ବର୍ତ୍ତମାନ" ଶବ୍ଦର ବହୁଳ ବ୍ୟବହାର ମଧ୍ୟ ଶ୍ରୁତିକଟୁ ହେଉଛି ।

କବିତାରୁ ମନେ ହେବ କବିଙ୍କର ଶବ୍ଦ ଭଣ୍ଡାର ବେଶ୍ ସମୃଦ୍ଧ । ଆଶା ସେଗୁଡ଼ିକ ଯେତେ ଶୀଘ୍ର ନିର୍ଦ୍ଦିଷ୍ଟ ଆବେଗ ଓ ବ୍ୟକ୍ତିଗତ ଅନୁଭୂତିର ନିଆଁରେ ପୋଡ଼ି ହୋଇ ସୁନା ହେବେ ଏବଂ ଯେତେଶୀଘ୍ର ଇମେଜ୍ ଓ ଆର୍କିଟାଇପ୍ ବା ବ୍ୟକ୍ତିଗତ ମିଥ୍ର ହାତୁଡ଼ି ଓ ଫୁଙ୍କନଳୀରେ ସେ ସୁନା ଉପରେ ସେ କାରୁକାର୍ଯ୍ୟ ରଚି ପାରିବେ ସେତେ ଶୀଘ୍ର ତାଙ୍କର କବିତାରେ ଆଶାପ୍ରଦ ଅଭିବୃଦ୍ଧି ହେବ । ଅନିର୍ଦ୍ଦିଷ୍ଟ ଚିନ୍ତା- ବିଶୃଙ୍ଖଳାରୁ ଗଭୀର ଅନୁଭବ; ଅସଂଯତ ଶବ୍ଦ-ସମ୍ଭାରରୁ ସୁସଂହତ, ପରିମାର୍ଜିତ ତଥା ସଂଯମନମ୍ର ଶବ୍ଦ ବ୍ୟବହାର; ବ୍ୟାହତ, ଭାରାକ୍ରାନ୍ତ, ବିପର୍ଯ୍ୟସ୍ତ ଶୈଳୀରୁ ଧ୍ୟାନମଗ୍ନ ଆକାଶପରି ଗମ୍ଭୀର ଶୈଳୀ ଆଡ଼କୁ ପ୍ରତ୍ୟେକ କବିଙ୍କୁ ଆଗେଇବାକୁ ହୁଏ । ଶ୍ରୀଲେଙ୍କା ଯେ ଏ ଦିଗରେ ପ୍ରଚେଷ୍ଟାବାନ୍ "ଉତ୍ତରଣ" ସେ ଆଶାର ଝଲକ ନିଶ୍ଚେ ବହନ କରୁଛି ।

**ସୀତାକାନ୍ତ ମହାପାତ୍ର**
ତା ୨୦ । ୧୧ । ୭୭

## ଆଧୁନିକ ଓଡ଼ିଆ ଦୀର୍ଘ କବିତାର ପରିପ୍ରେକ୍ଷିତରେ

# "ଉତ୍ତରଣ"

ଆଧୁନିକ ଓଡ଼ିଆ ସାହିତ୍ୟରେ ଅତି ଅଳ୍ପସଂଖ୍ୟକ ଦୀର୍ଘ କବିତା ଲେଖା ଯାଇଛି । ସେଗୁଡ଼ିକ ଏକ ସ୍ୱତଂତ୍ର ଶ୍ରେଣୀର କବିତା । ବର୍ତ୍ତମାନ ଯୁଗରେ ଦୀର୍ଘ କବିତା ଲେଖା ଏକ ନିତାଂତ ଆକସ୍ମିକ ଘଟଣା ନୁହେଁ । ଏହା ପଛରେ ଜୀବନ-ପ୍ରତି ଏକ ସ୍ୱତଂତ୍ର ଦୃଷ୍ଟିଭଂଗୀ ରହିଛି । ଦିନଥିଲା ଦୀର୍ଘ ଉପନ୍ୟାସ, ମହାକାବ୍ୟ, କାବ୍ୟ ଓ ପାଂଚଅଂକ ବିଶିଷ୍ଟ ବୃହତ୍ ନାଟକ ଲେଖା ଯାଉଥିଲା । କ୍ରମେ ଦୀର୍ଘ ଉପନ୍ୟାସରୁ କ୍ଷୁଦ୍ର ଉପନ୍ୟାସ ଓ ଶେଷରେ କ୍ଷୁଦ୍ରଗଳ୍ପ, ପାଂଚଅଂକ ବିଶିଷ୍ଟ ନାଟକରୁ ଏକାଂକିକା, ମହାକାବ୍ୟ ଓ କାବ୍ୟରୁ କ୍ଷୁଦ୍ରକବିତା ଲେଖା ଆରଂଭ ହେଲା । ଏହା ମଧ୍ୟ ଆକସ୍ମିକ ନ ଥିଲା । ଏହା ପଛରେ ସେତେବେଳର ଜୀବନପ୍ରତି ଦୃଷ୍ଟିଭଂଗୀ କାର୍ଯ୍ୟ କରୁଥିଲା । 'ଦୀର୍ଘ ଉପନ୍ୟାସ' ଓ 'ମହାକାବ୍ୟ' ଯୁଗର ମାନବ ବ୍ୟକ୍ତିତ୍ୱ ଅଖଂଡ ସତ୍ତା ଥିଲା । ସେ ଯୁଗର ଲେଖକ ଜୀବନକୁ ସଂପୂର୍ଣ୍ଣ ଭାବରେ ଉପଲବ୍ଧି କରିବାକୁ ଚେଷ୍ଟା କରୁଥିଲା । ମାତ୍ର ମାନବର ବ୍ୟକ୍ତିତ୍ୱ ଏକ ବହୁଧା ବିଭକ୍ତ ସତ୍ତା ବୋଲି ଯେତେବେଳେ ଲେଖକମାନେ ହୃଦୟଂଗମ କଲେ ସେତେ-ବେଳେ 'ସଂପୂର୍ଣ୍ଣ' ଜୀବନକୁ ଉପଲବ୍ଧି କରିବା ଅସଂଭବ ହୋଇପଡ଼ିଲା । ଜୀବନର ଭଗ୍ନାଂଶକୁ ଉପଲବ୍ଧି କରିବା ଚେଷ୍ଟାରୁ ଜନ୍ମ ନେଲା କ୍ଷୁଦ୍ରଗଳ୍ପ, କ୍ଷୁଦ୍ର କବିତା ଓ ଏକାଂକିକା । ମାତ୍ର ବର୍ତ୍ତମାନ ପୁଣି ଦେଖିବାକୁ ମିଳୁଛି "ରିମେମ୍ବ୍ରାନ୍ସ ଅଫ୍ ଥିଂସ୍ ପାଷ୍ଟ" ଭଳି ଦୀର୍ଘ ଉପନ୍ୟାସ, "ମୋର୍ନିଂ ବିକମସ୍ ଇଲେକ୍ଟ୍ରା" ଭଳି 'ଟ୍ରିଲୋଜି' ଓ "ଓ୍ୱେଷ୍ଟଲ୍ୟାଂଡ", 'କାଳପୁରୁଷ' ବା ବର୍ତ୍ତମାନର ଆଲୋଚ୍ୟ "ଉତ୍ତରଣ" ଭଳି ଦୀର୍ଘ କବିତା । ଏ ଗୁଡିକ ପଛରେ ପୁନର୍ବାର ଜୀବନକୁ ସଂପୂର୍ଣ୍ଣ-ଭାବେ ଉପଲବ୍ଧି କରିବାର ଚେଷ୍ଟା ବିଦ୍ୟମାନ । ମାତ୍ର ସେ ଚେଷ୍ଟା କେତେଦୂର ସଫଳ ହୋଇଛି ସେ ଭିନ୍ନ କଥା ।

ବର୍ତ୍ତମାନ ଯୁଗରେ ଦୀର୍ଘ କବିତା ଲେଖିବା ସହଜସାଧ୍ୟ ନୁହେଁ । ବିଭିନ୍ନ ପ୍ରତିବନ୍ଧକ ମଧ୍ୟରୁ ବିଷୟବସ୍ତୁ ନିର୍ବାଚନ ଏକ ପ୍ରଧାନ ସମସ୍ୟା । ଆଗରୁ ଯେଉଁ ଦୀର୍ଘ କବିତା ସବୁ ଲେଖାଯାଉଥିଲା ସେଗୁଡ଼ିକ ହୁଏତ ଗଳ୍ପ-ପ୍ରଧାନ ଥିଲା । ଏ ଦୁଇପ୍ରକାର ଦୀର୍ଘ କବିତା ଖୁବ୍ ସାର୍ଥକ ହେଉଥିଲା ମଧ୍ୟ । କିଟ୍ସଙ୍କର " ଇଭ୍ ଅଫ୍ ସେଣ୍ଟ ଆଗ୍ନେସ୍ " ଏବଂ ମ୍ୟାଥ୍ୟୁ ଆର୍ନୋଲ୍ଡଙ୍କର " ସ୍କଲର ଜିପ୍ସି " କିମ୍ବା " ଥାଇର୍ସିସ୍ " ଏହି ଶ୍ରେଣୀର କବିତା । ମାତ୍ର ବର୍ତ୍ତମାନ ଗଳ୍ପ ବା ଘଟଣାକୁ କେନ୍ଦ୍ର କରି ଆଉ କବିତା ଉପନ୍ୟାସ ଲେଖିବା ସମ୍ଭବ ନୁହେଁ । ଚେତନା-ପ୍ରବାହ ଉପନ୍ୟାସରେ ଗଳ୍ପକୁ ହତ୍ୟା କରିବାର ଚେଷ୍ଟା ବିଦ୍ୟମାନ । ଫଳରେ ଉପନ୍ୟାସ ବିକଳାଙ୍ଗ ଓ ବିକୃତ ହୋଇ ପଡ଼ୁଛି । କିନ୍ତୁ କବିତା କ୍ଷେତ୍ରରେ ଗଳ୍ପ-ପ୍ରଧାନ କବିତାର ଦିନ ନାହିଁ । ତେଣୁ ଦୀର୍ଘ କବିତା ପାଇଁ ବର୍ତ୍ତମାନ ଏକ ସ୍ୱତନ୍ତ୍ର ଶ୍ରେଣୀର ବିଷୟବସ୍ତୁ ନିର୍ବାଚନ କରିବାକୁ ପଡ଼ୁଛି । ଆଧୁନିକ କବି ତାଙ୍କର ଭାବାବେଗକୁ ପ୍ରକାଶ କରୁଛନ୍ତି ହୁଏତ କୌଣସି କେନ୍ଦ୍ର ଚିତ୍ରକଳ୍ପ, ମିଥ୍ ବା ଆର୍କିଟାଇପ୍ର ସାହାଯ୍ୟ ନେଇ ।

ସେଥିପାଇଁ ଆଗରୁ ଲେଖାଯାଉଥିବା ଅଧିକାଂଶ ଦୀର୍ଘ କବିତାରେ ଯେପରି ଆତ୍ମିକ-କ୍ରମବିକାଶ ( Thematic development ) ଦେଖିବାକୁ ମିଳେ, ବର୍ତ୍ତମାନର ଦୀର୍ଘ କବିତା ଗୁଡ଼ିକରେ ସେପରି ଦେଖିବାକୁ ମିଳେ ନା ; ପ୍ରାୟ ଆଧୁନିକ ଦୀର୍ଘ କବିତାରେ ବିଷୟବସ୍ତୁର କୌଣସି କ୍ରମବିକାଶ ନାହିଁ କହିଲେ ଚଳେ — ଏବଂ ରହିବା ସମ୍ଭବ ମଧ୍ୟ ନୁହେଁ । ଓ୍ୱେଷ୍ଟଲ୍ୟାଣ୍ଡରେ ଠିକ୍ ଏହାହିଁ ହୋଇଛି । କେତେଗୁଡ଼ିଏ ଇମେଜ୍, ସିମ୍ବଲ୍, ଏବଂ ମିଥ୍କୁ ନେଇ କବିତାଟି ଲେଖାଯାଇଛି । ଓଡ଼ିଆରେ ' କାଳପୁରୁଷ ' ପୂରାପୂରି 'ଓ୍ୱେଷ୍ଟଲ୍ୟାଣ୍ଡ' ଛାଞ୍ଚରେ ଲେଖା ଯାଇଥିଲେ ମଧ୍ୟ ସେଥିରେ ସ୍ଥାନୀୟ ପରିବେଶ ( Local Colour ) ସୃଷ୍ଟି କରିବାରେ କବି ସମର୍ଥ ହୋଇଛନ୍ତି । 'ବାଘଶିକାର'ରେ ଏକ କେନ୍ଦ୍ର ଇମେଜ୍ ରହିଛି ଏବଂ ତାହାହିଁ କବିଙ୍କର ଭାବବେଗକୁ କେନ୍ଦ୍ରମୁଖୀ କରି ପାରିଛି । ' ମାଟି ଓ ମଣିଷ'ରେ ଯେଉଁ କେନ୍ଦ୍ର ଇମେଜ ରହିଛି ତାହା ମିଥୋଲଜିରୁ ନିଆ-ଯାଇଛି । ତା' ଛଡ଼ା ସେଥିରେ 'ମାଟି' ଏକ ଆର୍କିଟାଇପ୍ । 'ଉତ୍ତରଣ'ରେ ସେପରି କୌଣସି କେନ୍ଦ୍ର ଇମେଜ୍ ବା ଆର୍କିଟାଇପ୍ ନାହିଁ । ତେଣୁ ଆପାତ ଦୃଷ୍ଟିରେ ମନେ ହୁଏ ଯେ କବିତାରେ କୌଣସି ଏକତ୍ୱ ( Unity ) ନାହିଁ । ମାତ୍ର ସମ୍ପୂର୍ଣ୍ଣ

କବିତାଟି ଗୋଟିଏ ନିର୍ଦ୍ଦିଷ୍ଟ ଭାବାବେଗ ଓ ଅନୁଭୂତିରୁ ଜନ୍ମ ନେଇଛି । ତାହାହିଁ ହେଉଛି କବିତାଟିର ଏକତ୍ୱର ସୂତ୍ର (Unifying factor)। 'ସମ୍ରାଟ୍' ହେଉଛି ଆଧୁନିକ ଜୀବନର ଏକ ନିର୍ଦ୍ଦିଷ୍ଟ ବିଭବର ବାଙ୍ଗ୍ମୟରୂପ । ଠିକ୍ ତାର ବିପରୀତ ହେଉଛି 'ସ୍ୱୟଂ-ସଂପୂର୍ଣ୍ଣ' — ଯାହାକୁ କି କବି 'ଖଦ୍ୟୋତର ମହିମା' ବୋଲି କହୁଛନ୍ତି । 'ଉତ୍ତରଣ'ରେ ରହିଛି ଆତ୍ମାର ଉତ୍ତରଣର ସୂଚନା, ଯାହା ସ୍ଥିତିବାଦ-ଦର୍ଶନ-ଦ୍ୱାରା ପ୍ରଭାବିତ । ତେଣୁ 'ସମ୍ରାଟ୍' ରୁ 'ଉପସଂହାର' ପର୍ଯ୍ୟନ୍ତ ଯେତେ ଅସଂପୃକ୍ତ ହେଲେ ମଧ୍ୟ ଆତ୍ମିକ-ହିମବିକାଶର ଦ୍ୟୋତନା ଅନୁଭୂତ ହୁଏ ।

ବିଷୟବସ୍ତୁର ଅଗ୍ରଗତି ଦୀର୍ଘ କବିତାରେ ଏକ ଉଲ୍ଲେଖ-ଯୋଗ୍ୟ ବିଶେଷତ୍ୱ ନୁହେଁ । ଆପାତ ପୃଥକ ଦୃଶ୍ୟ ଭିତର ଦେଇ ଗୋଟିଏ ନିର୍ଦ୍ଦିଷ୍ଟ ଚିନ୍ତାର ପରିସ୍ଫୁଟନ କବିତାକୁ ଅଧିକ ବଳିଷ୍ଠ କରେ । ଟେନିସନ୍‌ଙ୍କ "ଇନ୍ ମେମୋରିଅମ୍" ରେ ଠିକ୍ ଏହାହିଁ ଦେଖିବାକୁ ମିଳେ । ଏଥିରେ ବିଷୟବସ୍ତୁର ଅଗ୍ରଗତି ଅପେକ୍ଷା ଘଟଣାର ବିଶ୍ଳେଷଣ ଜନିତ ସୂକ୍ଷ୍ମ ଦୃଷ୍ଟି ବେଶି କାର୍ଯ୍ୟ କରିଛି । ଆଧୁନିକ ଦୀର୍ଘ କବିତାରେ ଏହି ଆଭିମୁଖ୍ୟ (Tendency) ପରିଲକ୍ଷିତ ହୁଏ । ଏକ ବିଶେଷ ଭାବାବେଗ ଓ ଜୀବନାନୁଭୂତିକୁ କବି ବିଭିନ୍ନ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିବାରେ ପ୍ରୟାସୀ । ପୁଣି ସେ ପ୍ରୟାସ ଭିନ୍ନ ଭିନ୍ନ 'ଇମେଜ୍' ବା 'ସିଂବଲ୍' ସାହାଯ୍ୟରେ ଆଙ୍ଗିକ ପ୍ରକାଶମାନ । କେନ୍ଦ୍ର ଇମେଜ୍ ବା ଆର୍କିଟାଇପ୍ ଏକତ୍ୱର ସୂତ୍ର ହିସାବରେ କାର୍ଯ୍ୟ କରିବା ସତ୍ତ୍ୱେ ଦୀର୍ଘ କବିତା ଏକ ଦିଗରୁ କେତେଗୁଡ଼ିଏ କ୍ଷୁଦ୍ର କବିତାର ସମଷ୍ଟି ରୂପେ ପ୍ରତିଭାତ ହେଉଛି ଓ ଏହି ଅଙ୍ଗାଙ୍ଗୀ ସଂବନ୍ଧ ବନ୍ଧନ ଯୋଗସୂତ୍ର ମଧ୍ୟରେ ଦୀର୍ଘ କବିତାର ବିଭିନ୍ନ ଅଂଶଗୁଡ଼ିକ ସ୍ୱୟଂସଂପୂର୍ଣ୍ଣ ହୋଇ ଯାଉଛି ।

ଆଲ୍ଡକସ୍ ହକ୍ସଲେ ତାଂକର "ପଏଂଟ କାଉଂଟର ପଏଂଟ" ଉପନ୍ୟାସ-ରେ ଏହା ସୂଚନା ଦେଇଛନ୍ତି । ଉପନ୍ୟାସର ନାୟକ କହିଛି— ଗୋଟିଏ ଘଟଣାକୁ ବିଭିନ୍ନ ଦୃଷ୍ଟିକୋଣରୁ ଦେଖିବାହିଁ ହେଉଛି ଆଧୁନିକତା । ମାତ୍ର ଏକା ମଦକୁ ଭିନ୍ନ ଭିନ୍ନ ରଂଗର ବୋତଲରେ ପୂର୍ଣ୍ଣ କରିବାରେ କିଛି ବୈଶିଷ୍ଟ୍ୟ ନାହିଁ । ବରଂ ସେ ବସ୍ତୁଟିର ଅଖଂଡତା (Totality) ଆମ ଉପଲବ୍ଧିର ଅଧୀନତା ସ୍ୱୀକାର କରେ ନାହିଁ । ଏହିସବୁ କେନ୍ଦ୍ରାପସାରୀ ଶକ୍ତିସମୂହକୁ (Centrifugal forces) ପ୍ରତିହତ କରିବା ପାଇଁ ଆଧୁନିକ କବିମାନେ 'କେନ୍ଦ୍ର ଇମେଜ୍',

'ଆର୍କିଟାଇପ୍' ବା ମିଥ୍ ଇତ୍ୟାଦିର ଆଶ୍ରୟ ନେଇଥାଂନ୍ତି । କିଂନ୍ତୁ ବିଭିନ୍ନ ଇମେଜ୍ ଓ ସିଂବଲ୍ ମାଧ୍ୟମରେ କବି ପ୍ରାପ୍ତ ଗୋଟିଏ କଥା କହୁଥାଂନ୍ତି କିଂବା ବକ୍ତବ୍ୟ ବହୁମୁଖୀ ହେଲେ ମଧ୍ୟ ଅନେକ କ୍ଷେତ୍ରରେ ଏ ଗୁଡ଼ିକ ବିଶୃଂଖଳ ଓ ସଂପର୍କ-ବିହୀନ ଜଣାଯାଂନ୍ତି । 'କାଳପୁରୁଷ'ରେ ରମୁର ମୃତ୍ୟୁ ଓ ସୁଗର୍ଣ୍ଣି ଦାସ ଇଂଜିନିୟରର ଅହଂକାର ମଧ୍ୟରେ ଅଂଗାଂଗୀ ସଂବନ୍ଧ ଥିବା ପରି ମନେ ହୁଏ ନା । ପୁଣି ସେଠୁ ଲାବଣ୍ୟବତୀ; ଚଂଦ୍ରଭାନୁ ଏବଂ ଶେଷରେ ଅକ୍ରୁର, ଉଦ୍ଧବ ମଧ୍ୟରେ ଥିବା ଯୋଗସୂତ୍ର ସ୍ପଷ୍ଟ ନୁହେଁ । ଏହା ଇମେଜ୍ ଓ ସିଂବଲଗୁଡ଼ିକ ହୁଏତ ଏକ ନିର୍ଦ୍ଦିଷ୍ଟ ଭାବାବେଗ ପ୍ରକାଶ ପାଇଁ କବିଂକଦ୍ୱାରା ଅନୁସୃତ ପଂଥା — ନଚେତ୍ ଯେଉଁ ଭିନ୍ନ ଭିନ୍ନ ଅନୁଭୂତି ପ୍ରକାଶିତ ସେଗୁଡ଼ିକ ସଂବନ୍ଧହୀନ ଓ ବିଶୃଂଖଳ । ଏ ସବୁ ସତ୍ତ୍ୱେ 'କାଳପୁରୁଷ'ର ଗୀତିଧର୍ମୀ ଆବେଦନ ( Lyrical appeal ) ପାଠକକୁ ମୁଗ୍ଧ କରେ ।

"ବାଘଶିକାର"ରେ ମଧ୍ୟ ସେହି ପ୍ରଣାଳୀ ଅନୁସୃତ । ଏହାର କେଂନ୍ଦ୍ର ଇମେଜ୍ ଖୁବ୍ ଶକ୍ତିଶାଳୀ ଏବଂ ଏହା କବିତାର କେଂନ୍ଦ୍ରାପସାରୀ ଶକ୍ତିସମୂହକୁ ପ୍ରତିହତ କରିବାରେ ଅନେକ ପରିମାଣରେ ସକ୍ଷମ ହୋଇଛି । 'ଦକ୍ଷିଣ ଭାରତ ଭ୍ରମଣ-ରେ ବର୍ଣ୍ଣିତ ହାସ୍‌ପାତାଳରେ ଟ୍ରଷ୍ଟିକେଷ୍ଟ', 'କୃଷକର ସ୍ତ୍ରୀକୁ ବାଘ ଘୋଷାରି ନେବା'; 'କୁନାର ବାର୍ଷିକ ପରୀକ୍ଷା କାଂବା 'ବାଘଭୋଜି'ରେ ଠିକ୍ ଉପରୋକ୍ତ ପ୍ରଣାଳୀ ଅନୁସୃତ । କିଂନ୍ତୁ ଏଠି କବିତାଟିର ଏକତ୍ୱ (Unity) ବେଶ୍ ରହିପାରିଛି ।

ଏ ଦୃଷ୍ଟିରୁ ' ମାଟି ଓ ମଣିଷ ' କବିତା ସବୁଠୁ ବେଶି ସଫଳତା ହାସଲ କରିଛି । ଏଠି କେଂନ୍ଦ୍ର ଇମେଜ୍ ଓ ଆର୍କିଟାଇପ୍ ପ୍ରୟୋଗ ଦ୍ୱାରା କବି କବିତାର ଏକତ୍ୱ ପୂରାମାତ୍ରାରେ ରକ୍ଷା କରିଛଂନ୍ତି । 'ପଥରର ବଂଧଶାଳା', 'ସାତଟି କବାଟ' ଆଉ ଅନର୍ଗଳ ଲୁହାର କଳଣି'— ହେଉଛି କବିତାଟିର କେଂନ୍ଦ୍ର ଇମେଜ୍ । ଏକ ନବଜାତକର ଆବିର୍ଭାବ ଏବଂ ଏଇ କାରାଗାରରୁ ମୁକ୍ତି— 'ମିଥୋଲଜି'ରୁ ଆମଦାନି ଇମେଜ୍‌ଟି ଶକ୍ତିଶାଳୀ । 'ମାଟି' ଏକ ଆର୍କିଟାଇପ୍ । କବିଂକର ବକ୍ତବ୍ୟ ସ୍ପଷ୍ଟ ଓ ସହଜବୋଧ୍ୟ ହେବା ସତ୍ତ୍ୱେ ପ୍ରକୃତ ଅର୍ଥରେ କବିତାଟିରେ ଆତ୍ମିକ-ଅସମ-ବିକାଶ ନାହିଁ । ବିଭିନ୍ନ ଭାବାବେଗ ଓ ଅନୁଭୂତିକୁ ଆଣି କେଂନ୍ଦ୍ର ଇମେଜ୍ ସାଂଗରେ ଖଂଜି ଦିଆଯାଇଛି । କେଂନ୍ଦ୍ର ଇମେଜ୍ କବିତାର ଏକତ୍ୱ ରଖି ପାରିଛି; ମାତ୍ର ବିଷୟବସ୍ତୁର ଅତ୍ରଗତିରେ ସାହାଯ୍ୟ କରି ନାହିଁ ।

'ଉତ୍ତରଣ'ରେ ଏଇ ସମସ୍ୟାଟି ଅନ୍ୟ ଏକ ରୂପ ନେଇଛି । କବିତାଟିରେ ଥିବା ତିନୋଟି ବିଭାଗ ମଧ୍ୟରେ କୌଣସି ସେତୁ ନାହିଁ । କବି ଲଂଫ ଦେଇ ଗୋଟିକରୁ ଅନ୍ୟଟିକୁ ଯାଉଛନ୍ତି । ମାତ୍ର ସାଧାରଣ ପାଠକ ତାହା କରିବାକୁ ସକ୍ଷମ ହେବ କି ? ତା' ଛଡ଼ା ପ୍ରତ୍ୟେକ ବିଭାଗରେ ବିଷୟବସ୍ତୁର ଆଶାନୁରୂପ କୌଣସି ଅଗ୍ରଗତି ନାହିଁ । କବି ଏକ ନିର୍ଦ୍ଦିଷ୍ଟ ଭାବାବେଗ ଓ ଅନୁଭୂତିକୁ ବିଭିନ୍ନ ଦୃଷ୍ଟି-କୋଣରୁ ବିଶ୍ଳେଷଣ କରିଛନ୍ତି । ତେଣୁ ଏଇ ବିଶ୍ଳେଷଣାତ୍ମକ ଦୃଷ୍ଟିଭଂଗୀର ପରିବର୍ତ୍ତନ ଭିନ୍ନ ବିଷୟବସ୍ତୁର ଅଗ୍ରଗତି ପରିଲକ୍ଷିତ ହୁଏ ନା ।

ଆଧୁନିକ ଜୀବନର ଘାତ ପ୍ରତିଘାତ ମଧ୍ୟରେ କବିମାନସର ପ୍ରତିକ୍ରିୟା 'ଉତ୍ତରଣ'ର ବିଷୟବସ୍ତୁ । କିନ୍ତୁ ଏତିକିରେ କବିତାର ସାମଗ୍ରିକ ଭାବ ସୀମିତ ନୁହେଁ । କବିତାର ମୂଲ୍ୟ ବିଚାର ବେଳେ ପ୍ରଧାନତଃ ତିନୋଟି ବିଷୟ ପ୍ରତି ଦୃଷ୍ଟି ଦେବାକୁ ପଡେ — କବିମାନସର ପ୍ରତିକ୍ରିୟାର ବ୍ୟାପକତା, ଗଭୀରତା ଓ ତା.ର ପ୍ରକାଶଭଂଗୀ । କବି ଯୁଗ ଓ ସମାଜର 'ସଚେତନ ବିନ୍ଦୁ' । ତେଣୁ ଜୀବନ ଓ ସମାଜପ୍ରତି ତାର ପ୍ରତିକ୍ରିୟା ଯେ ଅନ୍ୟମାନଙ୍କଠାରୁ ତୀବ୍ରତର ହେବ, ଏହା ସୁନିଶ୍ଚିତ । କିନ୍ତୁ ସେ ତୀବ୍ରତାର ସ୍ୱରୂପ କ'ଣ ଏବଂ କବି ତାକୁ କିପରି ପ୍ରକାଶ କରିବାରେ ସମର୍ଥ ତା' ପୂରାପୂରି ଆପେକ୍ଷିକ କଥା । ସେ ଦୃଷ୍ଟିରୁ ବିଚାର କଲେ ଦେଖାଯିବ "ଉତ୍ତରଣ" ଏକ ସାର୍ଥକ ସୃଷ୍ଟି । ବର୍ତ୍ତମାନର ଜୀବନ ଓ ସମାଜର ଦୋଷ ତ୍ରୁଟି ପ୍ରତି କବି ସଚେତନ ଓ ବ୍ୟଥିତ । ମାତ୍ର ଏହି ସଚେତନତା ଓ ବ୍ୟଥା କଳାକାର ସୁଲଭ । ଏହା ଜୀବନ ପ୍ରତି ଘୃଣା ଜନ୍ମାଇବା ପରିବର୍ତ୍ତେ ଶତ ଦୋଷ ଦୁର୍ବଳତା ସତ୍ତ୍ୱେ ଜୀବନକୁ ଭଲ ପାଇବା ପାଇଁ ପାଠକକୁ ପ୍ରେରଣା ଦିଏ । ସାଧାରଣ ଦୃଷ୍ଟି-ବହିର୍ଭୂତ ନାନା ଅପାଂକ୍ତେୟ ବିଷୟ ପ୍ରତି କବିଙ୍କର ଦୃଷ୍ଟି "ଉତ୍ତରଣ"ରେ ଶାଣିତ ଓ ସେଗୁଡ଼ିକୁ ରୁଚିସମ୍ମତ ରୂପ ଦାନ ପାଇଁ କବି ଆଲୋକ-ପ୍ରୟାସୀ ।

"ଯାବତୀୟ ଉଦ୍ଭାସିତ ନିର୍ମଳ ଆଲୋକର ସୀମାନ୍ତରେ ମୁଁ ତନ୍ଦ୍ରାତୁର ଅନ୍ଧାରର ପଦଧ୍ୱନି । ମୋ ଚତୁର୍ଦ୍ଦିଗରେ କଳମୁଖର ଅଧମତ୍ୱ ମୋର କରୁଣାର ଛଟା ।"

ଏଠାରେ କବିଙ୍କର ଜୀବନପ୍ରତି ଦୃଷ୍ଟିଭଂଗୀ ଗଭୀର ଓ ସମବେଦନାଶୀଳ । 'ଉତ୍ତରଣ'ରେ କୌଣସି ନିର୍ଦ୍ଦିଷ୍ଟ ବକ୍ତବ୍ୟ ନ ଥିଲେହେଁ କବିମାନସର ବିକ୍ଷିପ୍ତ ଚିନ୍ତା ଓ ଅବସ୍ଥା ଆଶାପ୍ରଦ ସୌନ୍ଦର୍ଯ୍ୟ ସୃଷ୍ଟି କରିବା ପାଇଁ ଯତ୍ନଶୀଳ ।

ପ୍ରାଚୀନ ଓ ଆଧୁନିକ କବିମାନଂକ ସୃଷ୍ଟିରେ ବିଷୟବସ୍ତୁର ଉପସ୍ଥାପନାରେ ଭିନ୍ନତା ଦେଖାଯାଏ । ଆଧୁନିକ କବିଂକ ସୃଷ୍ଟିରେ ଭାବଗତ ବିଶୃଂଖଳା ମଧ୍ୟରେ ଏକ ସେତୁବଂଧ ସ୍ଥାପନର ଉପାୟ ଆଉର ତର୍ଯ୍ୟକ୍ ଓ ଭିନ୍ନସଂଥାଶ୍ରୟୀ । ଉଦାହରଣ ସ୍ୱରୂପ ଅନ୍ୟ ଏକ ଦୀର୍ଘ କବିତା 'କାଳପୁରୁଷ'ର କେତୋଟି ପଂକ୍ତି ଉଦ୍ଧାର ଯୋଗ୍ୟ ।

" ମୁଁ ସହେ କଷଣ ଲକ୍ଷ ଦେହ ଆଉ ମନ ଓ ଆତ୍ମାର
ମୋ ଦେହରେ ଗଂଧ ପୁଣି ପୁଷ୍ପବଣ୍ଟ ଗଣିକାର
ଚଂଦ୍ରଭାନୁ ହୁଂକାର ଓ ଇଷୀକାର ଲାବଣ୍ୟବଣ୍ଟର
ମୋ ମାଂସର ଗଂଧ ପୁଣି ମଦ ମତ୍ସ୍ୟ ନାଗ୍ନ ଗଂଧ
ମୋ ଦେହରେ ପୃଥ୍ୱୀର ଯାଯାବର ଆଲୋକ ଅଂଧାର । "

( କାଳପୁରୁଷ )

ଉପରୋକ୍ତ ପଂକ୍ତିଗୁଡ଼ିକ ସହିତ ନିମ୍ନୋକ୍ତ—

" ବର୍ତ୍ତମାନ ଅସୁସ୍ଥ ଅନୁଭୂତିର ରଂଜନ ବିଳାସ ।
କଦଂବର ଗଂଧ ଓ ପକ୍ୱଧାନର ବାସ୍ନାରେ ନର୍ଦ୍ଦମାର ।
ସବିନୀତ ଡାକରି । ବାରାଂଗନାର ପ୍ରୀତିପ୍ରଦ ଅଂଗନରେ
ସଂଦେହ ମୁକ୍ତ କ୍ଷୁଧାର ଆର୍ତ୍ତନାଦ । "

( ଉତ୍ତରଣ )

ପଂକ୍ତିଗୁଡ଼ିକ ତୁଳନା କଲେ ଏଇ ସେତୁବଂଧନ ପାଇଁ ଆଧୁନିକ କବିମାନେ କିପରି ବିଭିନ୍ନ ଉପାୟ ଅବଲଂବନ କରଂତି ତା' ସ୍ପଷ୍ଟ ବୁଝି ହେବ । ଦୁଇଟି କବିତାରୁ ଉଦ୍ଧୃତ ପଂକ୍ତିଗୁଡ଼ିକରେ ବକ୍ତବ୍ୟର ବିଶେଷ ପାର୍ଥକ୍ୟ ନାହିଁ । ପାର୍ଥକ୍ୟ ଅଛି କେବଳ ପ୍ରକାଶ ଭଂଗୀରେ ।

" ଉତ୍ତରଣ " କୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇଛି— 'ସମ୍ରାଟ୍', 'ସ୍ୱଂୟ-ସଂପୂର୍ଣ୍ଣ' ଓ 'ଉତ୍ତରଣ' । ପ୍ରତ୍ୟେକ ବିଭାଗର ନାମକରଣ ଏବଂ ସର୍ବୋପରି କବିତାର ନାମକରଣର ଯଥାର୍ଥତା ରହିଛି । ପ୍ରତ୍ୟେକ ଭାଗ ଏକ ବିଶେଷ ମାନସିକ ଅବସ୍ଥାର 'ବିଶ୍ଳେଷଣ', ବର୍ତ୍ତମାନର ମନୁଷ୍ୟ— 'ଏକ ରୁଗ୍ଣ ଚେତନାର

ପ୍ରେଟରରେ ଏକ ବିଷୟର କୁଟିଳ ସମ୍ରାଟ୍ ।' ଏହାଇଁ 'ସମ୍ରାଟ୍'ର ମୋଟାମୋଟି କଥା । ସେ 'ତୁରଣ ଚେତନାର ପେଟବ'ରୁ ମୁକ୍ତି ପାଇଁ ଏକ ବ୍ୟାକୁଳ ପ୍ରାର୍ଥନା ପରିସ୍ଫୁଟ ସ୍ୱପ୍ନ-ସମୃଦ୍ଧିରେ ଓ 'ଉତ୍ତରଣ'ରେ ରହିଚ ଉତ୍ତରଣ ପାଇଁ କାମନା, ପ୍ରାର୍ଥନା ଓ ତାର କାଂରତ୍ର ଅନୁଭୂତି । ଫଳଶ୍ରେୟରେ ଏହାଇଁ ଏ ପର୍ବ କବିତାର ବିଷୟବସ୍ତୁ । ପ୍ରଥମ ଦୁଇଟି ବିଭାଗରେ ଗଭୀର ଆତ୍ମ ପ୍ରତ୍ୟୟର ଯେଉଁ ସ୍ୱର ଶୁଣାଯାଏ ତା' ଶେଷଟିରେ ନାହିଁ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଜୀବନର ଘାତ ପ୍ରତିଘାତ, ନିରାଶା ଓ ଆଧ୍ୟାତ୍ମିକ ଦୈନ୍ୟ ବିଷୟରେ କବିଂକର ଅନୁଭୂତି ଯେପରି ପ୍ରତ୍ୟକ୍ଷ ଓ ଗଭୀର ଆତ୍ମାର 'ଉତ୍ତରଣ' ବିଷୟରେ ସେପରି ନୁହେଁ । ସେ ବିଷୟରେ କବିଂକ ଧାରଣା ବୌଦ୍ଧିକ, ଆଧ୍ୟାତ୍ମିକ ନୁହେଁ । ଅନେକ କ୍ଷେତ୍ରରେ ଏହାହିଁ ହୋଇଥାଏ ମଧ୍ୟ । ଏପରିକି 'ଇନ୍ ମେମୋରିଅମ୍' ଭଳି କବିତାରେ ଏହାହିଁ ହୋଇଛି । ଏଲିଅଟ୍ ଯଥାର୍ଥରେ କହିଛଂତି—

"In Memorium" is great not because of its faith which is a poor thing, but because of its doubt which is a grand spiritual experience.

'ଉତ୍ତରଣ' ପ୍ରତି ଏ ଉକ୍ତି ଏକାଂତ ପ୍ରଯୋଜ୍ୟ ।

'ଉତ୍ତରଣ'ର ଭାଷା ଆଧୁନିକ କବିତାର ଭାଷାଠାରୁ ଟିକିଏ ପୃଥକ୍ । ଆଧୁନିକ କବିତାରେ ତତ୍ସମ, ତଦ୍ଭବ, ଦେଶଜ ଓ ବୈଦେଶିକ ସମସ୍ତ ପ୍ରକାର ଶବ୍ଦ ପାଖାପାଖି ଦେଖାଯାଏ । ଏହା ହେଉଛି ସର୍ରିଆଲିଜ୍ମର ପ୍ରଭାବ । ଜଟିଳ ମାନସିକ ଅବସ୍ଥା ବା ଅନୁଭୂତିର ପ୍ରକାଶ ପାଇଁ ଅବଚେତନରୁ କେତେକ ଶବ୍ଦ ଆହରଣ କରିବାକୁ ପଡ଼େ । ଯେମିତି —

"ନିବିଡ଼ ସ୍ୱପ୍ନରେ ମଗ୍ନ ସେମାନେ ତ ଶୁଇ ଯାଇଛଂତି
ଗୋଟିକ ପରେ ଗୋଟିଏ ଝୁଲି ଝୁଲି ନଇଁ ନଇଁ

× × ×

ସେମାନେ ସମସ୍ତେ ମୃତ ଶର-ମାରିବିତ ।
ମୁଁ ମାରିଛି ସମସ୍ତଂକୁ, ଛେଚି ଛେଚି ପଥରରେ ॥

( ମାଟି ଓ ମଣିଷ )

ମାତ୍ର 'ଉତ୍ତରଣ'ର ଭାଷାରେ ଏକ ଗାଂଭୀର୍ଯ୍ୟ ରହିଛି । ରହିବା ମଧ୍ୟ ସ୍ୱାଭାବିକ । ଭାଷା ଭାବ ସାଗରର ସମତଳରେ ଗତି କରିବା ଦରକାର । କୁହାଯାଏ ଯେ ସାର୍ଥକ କବିତାରେ "Thought is born expressed !" 'ଉତ୍ତରଣ'ର ଭାବଗତ ଭାରସାମ୍ୟ ଏଇ ଭାଷାଯୋଗୁଁ ରକ୍ଷିତ ହୋଇଛି । ସେକ୍ସପିଅର ସମ୍ବନ୍ଧରେ "ସେକ୍ସପିଅର୍ ଏଣ୍ଡ ଦ ଗ୍ରାଣ୍ଡ ଷ୍ଟାଇଲ୍" ପ୍ରବନ୍ଧରେ କୁହାଯାଇଛି—ସେକ୍ସପିଅର ଗ୍ରାଣ୍ଡଷ୍ଟାଇଲ୍ ପାଇଁ ନିଜର ଆବଶ୍ୟକାନୁଯାୟୀ ଭାଷା ବ୍ୟବହାର କରିଛନ୍ତି, ପୁଣି ତାହା ଭାବାବେଗଦ୍ୱାରା ନିୟନ୍ତ୍ରିତ ହୋଇଛି । ମିଲ୍‌ଟନଙ୍କ ସମ୍ପର୍କରେ ମଧ୍ୟ କୁହାଯାଇଛି—ମିଲ୍‌ଟନଙ୍କ ଭାଷା ଜଣେ କୁଟୀରବାସୀର ଭାଷାଠାରୁ ଆହୁରି ସ୍ୱାଭାବିକ । ଏଇ ଦୃଷ୍ଟିରୁ 'ଉତ୍ତରଣ'ର ଭାଷା କବିଙ୍କର ଭାବାବେଗର ପ୍ରକାଶ ପାଇଁ ଉପଯୁକ୍ତ ବାହନ ହୋଇଛି । କବିତାର ଶବ୍ଦ-ଯୋଜନା ଓ ଶବ୍ଦ-ଗ୍ରଂଥନ ମଧ୍ୟ ଉଲ୍ଲେଖଯୋଗ୍ୟ । ପରସ୍ପର ବିରୋଧୀ ଭାବ-ଦ୍ୟୋତକ ଶବ୍ଦ ଗ୍ରଂଥନଦ୍ୱାରା କବି କବିତାଟିକୁ ଶକ୍ତିଶାଳୀ କରିବାକୁ ସମର୍ଥ ହୋଇଛନ୍ତି । ଏଭଳି ଶବ୍ଦ ଚୟନରେ ଏକ ବ୍ୟଂଗର ସ୍ୱର ରହିଛି; ଯାହା କେତେକ କ୍ଷେତ୍ରରେ ସ୍ପଷ୍ଟ ଓ କେତେକ ସ୍ଥଳରେ ଏକ ଅନ୍ତଃସଲିଳା ଫଲ୍‌ଗୁ ଭଳି ପ୍ରବାହିତ ।

ଆଧୁନିକ ସାହିତ୍ୟରେ ସର୍‌ରିଆଲିଜମର ପ୍ରଭାବ ସ୍ପଷ୍ଟ । ସାର୍ଥକ କବିତା କ୍ଷେତ୍ରରେ ମଧ୍ୟ ଏହାହିଁ ପରିଲକ୍ଷିତ ହୁଏ । ଏହାର ପ୍ରଭାବରେ କବିମାନସ ବହିର୍ମୁଖୀ ନ ହୋଇ ଅନ୍ତର୍ମୁଖୀ ହୋଇଥାଏ । ଫ୍ରଏଡ଼ ଓ ୟୁଙ୍ଗବାଦର ପ୍ରଭାବକୁ ଅସ୍ୱୀକାର କରି କବି ନିଜର ଅବଚେତନରେ ବୁଡ଼ି ତହିଁରୁ ରତ୍ନ ସଂଗ୍ରହର ଚେଷ୍ଟା କରେ ଅବଶ୍ୟ ସେଇ ସଂଗୃହୀତ ରତ୍ନକୁ ସଜାଇବା ଦାୟିତ୍ୱ କେତେକାଂଶରେ ଇନ୍‌ଟେଲେକ୍ଟ ଉପରେ ନିର୍ଭରଶୀଳ । 'ବାଘ ଶିକାର' କବିତାରେ ଅବଚେତନ ହେଉଛି ବାଘ, ଯାହା ଆମକୁ ଗିଳିବାକୁ ଆସୁଛି । ସେଇପରି 'ମାଟି ଓ ମଣିଷ'ରେ କଂସ ହେଉଛି 'ଆମର ଦିଗ୍ଭୟ' । କବି ସ୍ପଷ୍ଟ ଭାବରେ ଏହାହିଁ ଉଲ୍ଲେଖ କରିଛନ୍ତି ।

"ସଂକୁଚିତ କାୟା ମୋର ଅନୁଭବେ କାରା ଗୁଇ
ଗୁଇ ଗୁଇ ଅଂଧାରର ଗୁଇ

× × ×

ଜାତିସ୍ମର ମୋ ମନର ଅବଚେତନରେ
କାମନାର କଂଟାବୁଦା, ଭଂଗାସ୍ୱପ୍ନ ଯେତେ ଧଷାବାଲି । ”
( ମାଟି ଓ ମଣିଷ )

“ଫୁଲ କୁଂଢ଼େ କଂଟାଗଛ ପରି
ତମର ଶରୀରର ଖଣ୍ଡେ ତାର ଦେଇ ତମକୁ ଫୋଡୁଛି
ଓ ତମର ହୃଦୟର ଅନ୍ୟ ଏକ କୋଠରୀର ବାଘ
ଛଟପଟ ହୁଏ ଏକ ପ୍ରାଣାନ୍ତକ ପିପାସା କଷ୍ଟରେ ।”
( ବାଘ ଶିକାର )

କିନ୍ତୁ ‘ଉତ୍ତରଣ’ରେ ସର୍ରିଆଲିଜ୍‌ମର ପ୍ରଭାବ ପରିବର୍ତ୍ତେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ (Psycho-analysis )ର ପ୍ରଭାବ ଦେଖିବାକୁ ମିଳେ । କବି ଆଧୁନିକ ଜୀବନ ପ୍ରତି ତାଂକ ମନର ପ୍ରତିକ୍ରିୟାକୁ ବିଶ୍ଳେଷଣ କରିଛଂନ୍ତି । ‘ସମ୍ରାଟ୍’ ଓ ‘ସ୍ୱପ୍ନ-ସମ୍ପୃକ୍ତି’ ଆଧୁନିକ ଜୀବନର ଏକ ବିଶେଷ ବିଶେଷ ଦିଗ ପ୍ରତି କବିମାନସର ନୈତିକ ପ୍ରତିକ୍ରିୟା ।

ଚିତ୍ରକଳ୍ପ ପ୍ରୟୋଗ ଦୃଷ୍ଟିରୁ କବିତାଟି ବେଶ୍ ଉଲ୍ଲେଖ ଯୋଗ୍ୟ । ସେ ଦିଗରେ କବି କବିତାଟିରେ ବିଭିନ୍ନ ପ୍ରକାର ପରୀକ୍ଷା କରିଛଂନ୍ତି । ଏବଂ କବିତାଟିକୁ ଏକ ଉନ୍ନତମାନକୁ ନେବା ପାଇଁ ଏଇ ଚିତ୍ରକଳ୍ପଗୁଡ଼ିକ କବିଂକୁ ଅନେକ ସାହାଯ୍ୟ କରିଛି । ଏଥିରେ ଅନେକ (କ) ଜଟିଳ ମାନସିକ ଅବସ୍ଥାର ରୂପାୟନ ପାଇଁ (ଖ) ଜୀବନ-ଉପଲବ୍‌ଧିର ପ୍ରକାଶ ପାଇ ଏବଂ (ଗ) ଜୀବନ ସମ୍ପର୍କୀୟ ଦୃଷ୍ଟି-ଭଂଗୀର ପରିଚୟ ଦେବାପାଇଁ, ଚିତ୍ରକଳ୍ପର ସାହାଯ୍ୟ ନିଆ ଯାଇଛି । ତେଣୁ ଆପାତ ଦୃଷ୍ଟିରେ ଅନେକ ଗୁଡ଼ିଏ ଚିତ୍ରକଳ୍ପ ସହଜବୋଧ ନୁହେଁ । ସେଗୁଡ଼ିକ ବୁଝିବାକୁ ହେଲେ କବିର ପ୍ରେରଣା-ଭୂମି ଓ ଜଟିଳ ମାନସିକ ଅବସ୍ଥା ପ୍ରତି ଧ୍ୟାନ ଦେବା ଆବଶ୍ୟକ ।

ଉଦାହରଣ ସ୍ୱରୂପ—

‘ପିଂଗଳ ମାଟିର କଟିରେ ମୋ ଦୂର୍ବାର ତୃଷାର ମେଖଳା’ ।
‘ଅପୂର୍ଣ୍ଣତାର ବୃତ୍ତରେ ଏକ ଅଜ୍ଞାତ ଅବବୋଧର
ବୈରାଗୀ-ସଂସାର ।’

'ଭୀରୁ ମନର ଓହଳରେ ଫାଶି ଦେଇଚି ଅନେକ ପ୍ରାଣିତ ହସ
ଓ କାଁ ଦୁବ ମୁହଁରେ ହସିବାର ଉପକ୍ରମ ।'

ଏସବୁ ଚିତ୍ରକଳ୍ପ ଗୁଡ଼ିକରେ ଭାବଗତ ଆବେଦନ ଯଥେଷ୍ଟ ଏବଂ ଏଗୁଡ଼ିକ କବିଂକର ଜୀବନକୁ ଉପଲବ୍ଧି କରିବାର ସ୍ୱରୂପ ଚିହ୍ନାଇ ଦିଏ ।

ଆଲୋଚ୍ୟ କବିତାର ଆଉ ଏକ ବିଶିଷ୍ଟ ଦିଗ ହୋଇଛି ଏହାର ବ୍ୟଂଗାତ୍ମକ ସ୍ୱର । ଏଥିରେ ଜୀବନକୁ ନିର୍ମମ ଭାବରେ ବ୍ୟଂଗ କରାଯାଇଛି । ଅଧିକାଂଶ ଆଧୁନିକ କବିତାରେ ଏହି ସ୍ୱର ଶୁଣାଯାଏ । ବ୍ୟଂଗ ଏକ ସୁସ୍ଥ ମନୋବୃତ୍ତିର ପରିଚାୟକ । କବି ଯେ ଆଧୁନିକ ଜୀବନକୁ ପ୍ରତ୍ୟକ୍ଷ ଓ ଗଭୀର ଭାବରେ ଉପଲବ୍ଧି କରିଛନ୍ତି । ତା' ଏଥିରୁ ସ୍ପଷ୍ଟ ସୂଚିତ ହୁଏ । କିନ୍ତୁ ଏ ବ୍ୟଂଗ ସେ କରିଛନ୍ତି କାହାକୁ ? ଏହା କଣ, ଜୀବନ ପ୍ରତି ? ସମାଜ ପ୍ରତି ? ନା ତାଂକ ନିଜ ପ୍ରତି ? ମନେହୁଏ ଉପରୋକ୍ତ ସମସ୍ତ ପ୍ରକାର ବ୍ୟଂଗ 'ଉତ୍ତରଣ'ରେ ଅଛି ।

'ମୋର ଶବ୍ଦ, ବର୍ଣ୍ଣ, ଗଂଧ ଓ ସ୍ପର୍ଶର ଝରକାରେ
କୋଟିମୁକ୍ତ ହିଂସାର ତରବାରି'
'ଅକ୍ଷମତାର ଦପ୍ତାରୁ ବର୍ତ୍ତମାନ କୁହୁଡ଼ିର ଧୂଆଁ ।'
'ହେ ମୋର ଦଳ ଦଳ ଗ୍ଲଗଳ ଓ ଭୁଜଂଗର ବଂଶଧର ।
ହେ ମୋର ମଦମତ୍ତ ପ୍ରୟୋଜନର କ୍ଷିପ୍ତ ଶୁଭ୍ର ଶିଖାର ଆସକ୍ତି!,

କବିଂକର ବେଦନାବୋଧ କେତେ ଗଭୀର ତାର ପ୍ରମାଣ ଉପରୋକ୍ତ ପଂକ୍ତି ଗୁଡ଼ିକରେ ସ୍ପଷ୍ଟ । କିନ୍ତୁ 'ଉତ୍ତରଣ'ର ବ୍ୟଂଗ ସମ୍ରାଟ' ଓ 'ସ୍ୱୟଂ-ସମ୍ପୂର୍ଣ୍ଣ'ପରି-ଶାଣିତ ଓ ତୀବ୍ର ନୁହେଁ ।

'ଉତ୍ତରଣ'ରୁ ଏକ ସ୍ଥିତିବାଦୀ ଦୃଷ୍ଟିଭଂଗୀର ପରିଚୟ ମିଳେ । ବର୍ତ୍ତମାନ ଯୁଗର ସାହିତ୍ୟକୁ ଏ ଦୃଷ୍ଟିଭଂଗୀ ଗଭୀର ଭାବରେ ପ୍ରଭାବିତ କରିଚି । ଜୀବନର ଦୁଃଖ, ଦୈନ୍ୟ, ନିରାଶା ମଧ୍ୟରେହିଁ ଜୀବନର ସାର୍ଥକତା ନିହିତ । ଜୀବନ ଓ ସତ୍ୟ ଅଂଗାଂଗୀ ଭାବେ ଜଡ଼ିତ । ଜୀବନର ବିଭିନ୍ନ ସମସ୍ୟା; ପ୍ରତିକୂଳତା ଓ ସଂଘର୍ଷମୁଖୀ

ତାଂକର ଆନୁଗତ୍ୟରେ ସତ୍ୟର ଦ୍ୟୁତି ପ୍ରକଟିତ ହୁଏ । ମହେନ୍ଦ୍ରୁ ଏଥିପାଇଁ କବି 'ଉତ୍ତରଣ'ରେ ପରିଷ୍କାର କହିଛଂତି—

ମୋ ସମ୍ମୁଖରେ ତାଳଗଛର ଗ୍ଛାଇ, ଗ୍ଛାଇର ସ୍ୱପ୍ନ
ଓ ସ୍ୱପ୍ନର ଭୂତ । ଅନେକ ସଂଶୟର ଛକରେ

ସେମାନେ ଠିଆ ହେଲେ ଏବଂ କିଛିକ୍ଷଣ ପରେ ଆର୍ତ୍ତନାଦର ସ୍ୱାକ୍ଷର ଦେଇ-ଗଲେ ! ଜୀବନ ଧନ୍ୟହେଲା !!"

"ହେ ସମ୍ରାଟ୍ ! ହେ ସ୍ୱପ୍ନଂ-ସଂପୃକ୍ତ ସନ୍ଧ୍ୟାର ମାଂଗଳିକ! ହେ ମୋ ଅଂଧ ନିର୍ମମ ବ୍ୟକ୍ତିତ୍ୱର କ୍ରମଶଃ ଉତ୍ତରଣ !! ତୁମମାନଂକର ଜୟ ହେଉ, ଜୟ ହେଉ ମୋ ଦୟନୀୟ ଧାରୁଆ ଅଂଧାରର ଓ ଜୟ ହେଉ ମୋ ବିକଳ୍ପ ମମତାର ।"

'କାଳପୁରୁଷ,' 'ବାଘ ଶିକାର' ଓ 'ମଂତ୍ରି ଓ ମନୀଷ'ରେ ମଧ୍ୟ ମୋଟାମୋଟି ଭାବରେ ଏହି ଦୃଷ୍ଟିଭଂଗୀର ପରିଚୟ ମିଳେ । ଜୀବନର ନିବିଡ଼ତମ ଆଂତରି-କତା ଓ ନିର୍ମମ ସତ୍ୟର ସଂଧାନରେ ଉପରୋକ୍ତ ଦୀର୍ଘ କବିତା ଗୁଡ଼ିକ ଆମକୁ ସମଧିକ ସଚେତନ କରାଂନ୍ତି ।

'ଉତ୍ତରଣ'କୁ ନେଇ ଯେଉଁ ଗୃହେଟି ସାର୍ଥକ ଦୀର୍ଘ କବିତା ଓଡ଼ିଆ ସାହିତ୍ୟରେ ଲେଖାଯାଇଛି ସେ ଗୁଡ଼ିକ ଯୁନ୍‌ଫାଏଡ଼୍ ସେନ୍‌ସିବିଲଟୀ ପ୍ରସୂତ । ପ୍ରତ୍ୟେକଟି କବିତାରେ ଭାବାବେଗ ଓ ବୌଦ୍ଧିକତା ପରସ୍ପର ଓତଃପ୍ରୋତଃ ଭାବେ ଜଡ଼ିତ । ଏସବୁ କବିତାର ଭିତ୍ତି ହେଉଛି— "Emotional appreh-ension of Thought ।" ତେଣୁ ମହେନ୍ଦ୍ରୁ ଏ ଶତାଧିକ ବର୍ଷ ପୂର୍ବେ ଟେନିସନ୍ ଯେଉଁ ବ୍ୟାକୁଳ ପ୍ରାର୍ଥନା କରିଥିଲେ—

"Let knowledge grow from more to more
But more of reverence in us dwell,

That mind and ~~soil~~ soul according well
May make one music as before. "

ତାହା ଯେ ବିଫଳ ହୋଇନି 'ଉତ୍ତରଣ' ତାର ସମଗୋତ୍ରୀୟ କବିତା ମାନଙ୍କ ସହିତ ସେ କଥା ସୂଚାଇ ଦେଉଛି ॥

**ଅକ୍ଷୟ୍ କୁମାର ଦାସ**
ଅଧ୍ୟାପକ, ଇଂରାଜୀ ବିଭାଗ
ଭଦ୍ରକ କଲେଜ ।

# ସ୍ମୃତି

## ଏକ

ବର୍ତ୍ତମାନ ସହସ୍ରାକ୍ଷ ମୁଁ । ଆନଂଦର ହିଲ୍ଲୋଳରେ କଂପିତ ମୋର ସ୍ୱପ୍ନ । ବିବର୍ଣ୍ଣ ମାଟିର ବକ୍ଷରେ ଜାଗ୍ରତ ମୋ ବର୍ତ୍ତିକାର ଧ୍ୱନି—ତାହା ଆତ୍ମସମର୍ପଣର ବେଦନା ! ମୋ ବିଜୟୀ ବସନ୍ତର ଚୌଦିଗେ ରକ୍ତର ଧ୍ୱଜା ଆଜି ଉଡୁଚି ! ନିଷ୍ପଲକ ଦୃଷ୍ଟିର ଦିଗଂତରେ ମଶାଲର ବିସ୍ତାର ଓ ପ୍ରାଣର ଆର୍ଦ୍ରିନ ସେରୁଦଂମାନା ! ମୋର ଦୁର୍ଦ୍ଦମନୀୟ ଇଚ୍ଛାର ପିଠିରେ ଅସଂଖ୍ୟ ଫୁଲର ବୋଝ । ମୁଁ ଏକ ନିର୍ଦ୍ଦିଷ୍ଟ ଓ ନିଷ୍ଠୁର ସନ୍ଧ୍ୟାର ପ୍ରେମରେ ରକ୍ତାକ୍ତ ଓ ବିଦୀର୍ଣ୍ଣ !!

ମୁଁ ଏକ ଦୁର୍ବୋଧ ପ୍ରତିଜ୍ଞା ! ପୃଥିବୀର ବ୍ୟର୍ଥ ପତଂଗର ଆଶ୍ରୟରେ ମୁଁ ଅଧିଷ୍ଠିତ । ସଜଳ ସ୍ନିଗ୍ଧ ଓ କଂଗ୍ର ଯୌବନର ସରଳତାକୁ ଆହୁତି ଆହୁତି ବ୍ୟସ୍ତତାରେ ସଂହତ ମୁଁ । ଯାବତୀୟ ଉଦ୍‌ଭାସିତ ନିର୍ମଳ ଆଲୋକର ସୀମାଂତରେ ମୁଁ ତଂଦ୍ରାତୁର ଅଂଧାରର ସ୍ପନ୍ଦନ ! ମୋ ଚତୁର୍ଦ୍ଦିଗରେ କଳମୁଣ୍ଡର ପ୍ରଥମତ୍ୱ ମୋତେ କରୁଣାର ଛଟା । ମୋର ନିର୍ଦ୍ଦେଶର ନାଗରାରେ ଥରହର ଘୃଣିତ ପାରଂପରିକ ମମତ୍ୱର ପ୍ରୀତି । ଯାହାଙ୍କ ଅବାଂଛିତ ଦୟାରେ ମୁଁ ଜନ୍ମ କରିଚ ସତ୍ୟକୁ, ଯାହାଙ୍କ ରୁଦ୍ଧ ଆବେଗର ଲକ୍ଷରେ ଗଢ଼ିଚି ମୋ ରୁଦ୍ରତାର ଗଡ଼ !

ବର୍ତ୍ତମାନ ମୁଁ ଚନ୍ଦ୍ରେଶ୍ୱରର ରାଜଦଣ୍ଡ ଧୃତ । ସହସ୍ର ବର୍ଷର ପିତୃତ୍ୱର ପୌରୁଷ ଓ କାରୁଣ୍ୟର ଅବିଶ୍ରାନ୍ତ ଦୁର୍ଯୋଗର ଯନ୍ତ୍ରଣା ଭୁଲି ମୁଁ ବର୍ତ୍ତମାନ କ୍ଲାନ୍ତିହୀନ ଘୂର୍ଣ୍ଣିର ଆବର୍ତ୍ତ ! ଫାଲ୍‌ଗୁନର ବିଚିତ୍ର ଶୋଭାସମ୍ପଦର ଆସରରେ ମୁଁ ବୈଶାଖର ମଧ୍ୟାହ୍ନ । ମୋ ପ୍ରଶାନ୍ତର ଉତ୍ତାଳ ଜଳ ତରଙ୍ଗରେ ଆତ୍ମପ୍ରତିଷ୍ଠାର ଉଦ୍ଧତ ଅଭିଯାନ । ମୁଁ ନିର୍ଲିପ୍ତ ନଦୀର ଉପକୂଳରେ ଦୁର୍ବାର ଉଦ୍ଧତ ବ୍ୟଙ୍ଗ ! ମୋ ଅଭିଜ୍ଞ ଓ ମୌନ ନିଷ୍କାଞ୍ଚନତାର ଦେହରେ ଧ୍ୱଂସର ନଗ୍ନ ପାଦଟୀକା !!

ବର୍ତ୍ତମାନ ଆଫ୍ରିକାର ସିଂହ ଗର୍ଜ୍ଜନ ! ଗର୍ଜ୍ଜନ ଲୋହିତ ମନର ଶାଣିତ ଗୋଧୂଳି ! ଓ କାନ୍ଦୁଛି ହବସୀମାନର ନିର୍ମମ ଖଣ୍ଡିତ ପଥର !! ବର୍ତ୍ତମାନ ଦାମ-ଝଟନୁର ଦୁଃସହ ଦୁଶ୍ଚିନ୍ତାରେ ବନସ୍ପତିର ଲକ୍ଷ୍ମୀ ବିଦୀର୍ଣ୍ଣା । ଅପସ୍ୱଧର୍ମୀ ଅହଲ୍ୟାର ସ୍ତନରେ ଗରଳର ଫୁତ୍କାର—ନିର୍ଜ୍ଜୀବ ମାଟିର ଓଠରେ କଙ୍କାଳର ବିଦ୍ରୂପମତ୍ତ ହସ । ଉଚ୍ଛିନ୍ନ ପରିବାରର ସ୍ୱପ୍ନ ପରି ବର୍ତ୍ତମାନ ପାଣିଚଆ ଚେତନାରେ ଅରଣ୍ୟର ଅନ୍ଧ୍ୟାନ । ଓ ଗୀର୍ଜ୍ଜାର ଗମ୍ବୁଜରେ କିମ୍ବା ତାଜମହଲର ବେଦନାସିକ୍ତ କାନ୍ଥରେ ଶାଗୁଣାର ନିରମସ୍ତ ସ୍ଥିତି । ବର୍ତ୍ତମାନ ଲୁଣ୍ଠନର ଦ୍ୱାର ମୁକ୍ତ ଓ ଦସ୍ୟୁବୃତ୍ତିର ଅଧିକାର-ପ୍ରାପ୍ତ ସୁନାଗରିକଗଣ ଦରବାରରେ ଉପବିଷ୍ଟ !!

ପ୍ରତିବେଶୀର ଭସ୍ମରେ ମୁଁ ସତର୍କ । ସତର୍କ ଅସ୍ତ୍ର ଝଙ୍କାରର ଝରୁଣାରେ, ପ୍ଲାବିତ ସମୁଦ୍ରର ଗର୍ଜ୍ଜନରେ—ସତର୍କ ଖ୍ରୁଶ୍ଚଭଙ୍କ ପାର ଅସ୍ପଷ୍ଟ ଚଉପଦୀର ଗୁଞ୍ଜନରେ—ସତର୍କ ଜରତାର ପୁଷ୍ଟ ଯୌବନର ଖଣ୍ଡ ବର୍ଚ୍ଚାରେ— ବର୍ତ୍ତମାନ ଭସ୍ମର ଆକାଶ ଓ ନର୍ଗ୍ଗିକ ଧରିତ୍ରୀର ଉଲ୍ଲାସ ପରି ରାଶିଭୂତ ମଂଥିତ ଯନ୍ତ୍ରଣାର ସ୍ୱର । ଭସ୍ମର ଚକିତ କମ୍ପନରେ ମୁକ୍ତ ବୈରାଗୀର ଇସ୍ପାତ୍ ମନ ! ଭସ୍ମର କ୍ରମଶଃ ବ୍ୟାପ୍ତିରେ ବିଚ୍ଛିନ୍ନ ସବୁଜ ସ୍ୱପ୍ନର ଆଲେଖ୍ୟ ! ଅବାଧ ଦାସତ୍ୱକୁ ତାଗିଦ୍ କରିବା କଣ୍ଠରେ ଆର୍ତ୍ତନାଦର ସୁସ୍ପଷ୍ଟ ଚେହେରା । ପ୍ରତିବେଶୀର ଭସ୍ମରେ ମୁଁ କଳଙ୍କିତ ମୁହୂର୍ତ୍ତର ଏକ ସୁନ୍ଦର ନିଦର୍ଶନ ॥

ଦୁଃଖୀ

ମୁଁ ଏ ପୃଥିବୀର ସମ୍ରାଟ୍ ? ସମ୍ରାଟ୍ ଏକ ସ୍ଖଳିତା ସୃଷ୍ଟିର ଓ ଭଂଗୁର ପ୍ରାଚୀର । ବନ୍ଦୁକର ସ୍ଫୁରଣ ଓ ଝଡର ଆଓ୍ୱାଜ ପରି ମୋର ଗର୍ବ । ଏକ ଜମାଟ-ବନ୍ଧା ଧୂଳିର ସୌନ୍ଦର୍ଯ୍ୟ ଓ ଝକ୍ ଝକ୍ ମୁକ୍ତାର ଫ୍ରେମ୍‌ରେ ମୋ ଅନ୍ତଃପୁରର ଯୌବନ ଆଜି ହସୁଚି ! ପରିହାସର ଗୁଞ୍ଜନ୍‌ରେ ବ୍ୟଗ୍ର ମୋର ଅଂଧ ରାଜତ୍ୱର କାରାଗାର । ଝରଣା କାଂଦୁଚି ଓ କ୍ଷତ ବିକ୍ଷତ ସତୀତ୍ୱ ମାଗୁଚି କାଡିଗୁଏ ଅଗ୍ନିର ମମତା । ବ୍ୟାଧିଗ୍ରସ୍ତ କୋଷ୍ଟାର ରୂପରେ କେବଳ ପରିତ୍ୟକ୍ତ ଲାଳସାର ଦଂଶନ । ମୁଁ ସମ୍ରାଟ୍ ! ମୋର କ୍ଷୁଧିତ ଓ ବେଗବତୀ କ୍ଷମତାର ନିଆଁ ଜଳୁଚି । ମୋର ଶବ୍ଦ, ବର୍ଣ୍ଣ, ଗଂଧ ଓ ସ୍ପର୍ଶର ଝରକାରେ କୋଷମୁକ୍ତ ହିଂସାର ତରବାରି । ମୁଁ ଏକ ରୁଗ୍ଣ ଚେତନାର ପେଣ୍ଡରେ ଏକ ବଷ୍ଟର କୁଟିଳ-ସମ୍ରାଟ୍ ।

ଏକ ଆଶ୍ଚର୍ଯ୍ୟ ସକାଳର ପ୍ରସ୍ତୁତ ପାଇଁ ମୋର ସୈନ୍ୟ ସମାବେଶ ॥ ଏକ ସ୍ତବ୍ଧ ଓ ନିରଂଧ୍ର ଶାଂତିର ଭିକ୍ଷାରେ ପତ୍ରପୂର୍ଣ୍ଣ ପ୍ରାକବଳକୋଠ :

ବର୍ତ୍ତମାନ ପ୍ରହସନର ତୃପ୍ତି,
ଓ ଅତୀତର ସ୍ୱଚ୍ଛ ଜଳବୃଷ୍ଟିରେ
ମୋ ସ୍ଥିତିର ଭଂଗୁର ହସ
ସ୍ପଷ୍ଟ ବିଂବିତ ।

ମୋର ଦୁଃସାହସ, ମୈତ୍ରୀ, କ୍ରୋଧ ଓ ବିରାଗର କାନ୍ଦଣାରେ ଝୁଣ୍ଟ ପଥର ମର୍ମର ! ମୋର ହୃଦୟର ଅଭିଜାତର ସମୁଦ୍ରରେ ପରିଚିତ ଜ୍ୱଳନର ହାହାକାର । ମୁଁ ଏକ ମେଘର ଗର୍ଜନ ସଂଗ୍ରହରେ ସ୍ପନ୍ଦମାନ ବିଦ୍ୟୁତ୍ ଓ ଯୁଗୋଚିତ ସମ୍ରାଟ୍ ॥

## ସୂଚି

ହେ ଛତ୍ରପତି ଶିବାଜୀ ! ହେ ସଗର ବଂଶର ସୁନ୍ଦରଗଣ ! ମୋତେ ନିଆଁର ସମୁଦ୍ରରୁ ଉଦ୍ଧାର କର । ହେ ମଧ୍ୟାହ୍ନବେଳାର ଦୁରଂତ ସମସ୍ତ ! ମୋ ଦୁର୍ଦ୍ଦମନୀୟ ଖ୍ରୀଂଷ୍ଠର ବପନ୍ନରୁ ଉଦ୍ଧାର କର ମୋତେ ! ହେ ମୋର ଶିଖିମନାଇର ବଂଶଧର ! ଶୂନ୍ୟତାର କ୍ଷିପ୍ର ପ୍ରତିଷ୍ଠାରୁ ତୁମେ ବାରେ ମୁକ୍ତ ହଅ ! ମନର ଅଗଣାରେ ବର୍ତ୍ତମାନ ଜନ୍ମାଂତରର ଗମ୍ଭୀର ଶୋଚନା ଖଗ୍ ଭଳି ନାଚୁଛି !!

ପିଂଗଳ ମାଟିର କଟିରେ ମୋ ଦୁର୍ବାର ତୃଷାର ମେଖଳା । ପ୍ରାର୍ଥିତ ପୁରସ୍କାରର ଦେହଳୀରେ ପୀଡ଼ିତ ଜନତାର ଅଶ୍ରୁର ଫସଲ । ମୋ ନିଷ୍କର ଭୂମିର ଇଲାକାରେ ଶତାବ୍ଦୀର ସିଂହ ଦଳ ଦଳ । ମୋ ପ୍ରଚ୍ଛିନ୍ନ ସ୍ତୁପର ମାଜଣାରେ ଅନଳର ଆଟାର ମଶାଲ । ମୋର ମୁକୁଟ, ବାହୁଯୁଗ ଖଡ୍ଗ, ପଦାଙ୍କ ଓ ଅଶ୍ୱାରୋହୀଙ୍କ ଦେହରେ ଅଂଧ ପଂଚୁତ୍ୱର ପ୍ରଦକ୍ଷିଣ । ମୋ ଝଲମଲ କାତର ବଂକ୍ତିତ୍ୱରେ ପାପର ଦର୍ପିତ ପଦାଘାତ । ହେ ଗେରୁଆ ମାଟିର ଫଧା, ହେ ନର୍ବକଳ୍ପ ଦୁଃଖର ଆନମ୍ର ପିଂଗଳ ପୃଥ୍ୱୀ ! ତୁମର ଶାରଦୀୟ ଶସ୍ୟ ସଂଖ୍ୟାର ଗର୍ଭରେ ନିଆଁ ଆଜି ଜଳୁଛି । ହେ ଝୋଲମଲ ଅତୀତର ଜରଦ୍‌ଗବ ସେନାପତିଗଣ ! ହେ ନିର୍ମମ ସତ୍ୟର ନିଶ୍ୱାସ-ପ୍ରଶ୍ୱାସ ! ଅଜି ମୋର ଆତୁର ମଧ୍ୟାହ୍ନ କାନ୍ଦୁଛି । ଆଜି ମୋର କ୍ଷୁବ୍ଧ ଆକାଶର ଇଗଲ ଚକ୍‌କର କାଟୁଛି ସମର୍ପିତ କାମନାରେ !

ବର୍ତ୍ତମାନ ସମସ୍ତ ବୃଦ୍ଧ ! (?) ମେ, ଆତ୍ମକ୍ରତ୍ୟସ୍ତ ଓ ଚେତନାରେ ବାରଂବାର ଢେଉର ଦଂତାଘାତ ! ବାରଂବାର ମୋ ସ୍ଥବିର ବାସନା (?) ଲେଲିହାନର ଶିଖାରେ

ଗୁର

ଚୈତନ୍ୟମୟ ! ହେ ମହାତ୍ମନ୍ ! ଏ ଉନ୍ମୁଖ ଅଗ୍ନିକୁଣ୍ଡର ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କିପରି କରିବି ? ହେ ମହାବାହୁ ! ଏ ଜଳହ୍ରଦର ଆସକ୍ତିରୁ ନିଜକୁ ମୁକ୍ତ କରିବି କିପରି ? ବର୍ତ୍ତମାନ ସମୟ ସ୍ଥବିର ? ଓ ମୋ ଗୃହପାଖେ ଅଜଗରର ଫୁତ୍କାର ! ବର୍ତ୍ତମାନ ଘୂର୍ଣ୍ଣ୍ୟମାଣ ମୌନତା ଓ ଶିହରିତ ଆଶଂକାରେ ଅସଂମିତ ଶାଂଖର ଗୁଂଜନ !! ହେ ନକ୍ଷତ୍ରର ବନ୍ଧାଣୀ କଳାକାର ! ହେ ବିଦଗ୍ଧ ଉଡ୍ଡୀୟମାନ ଶୋଚନାର ଜୀବନ୍ତ ବିହଙ୍ଗ ! ମୋତେ ହାଓ୍ୱାର ଲହରରେ ସଂଗ୍ଳିତ କର । ମୋତେ ଅସଂଖ୍ୟ ଫୁଲର ଦଉଡ଼ିରେ ବାନ୍ଧିବାର କୌଶଳରୁ ମୁକ୍ତ ଦିଅ । ମୁଁ ନର୍ମ୍ମଦାର ଶାଣିତ ପଥର; ଓ ବର୍ତ୍ତମାନ ପାର୍ଶ୍ୱବତରୁ ଉଡ଼ିଯାଉ ଦେଶ ବିଦେଶର ବନ୍ଧନମୁକ୍ତ ପକ୍ଷୀ !

ବର୍ତ୍ତମାନ ନିଶ୍ଚଳ ଅଜ୍ଞାତ ? ଛିନ୍ନ ଅଂଧକାରର ତେଜରେ ମୋ ଅନୁଶୋଚନାର ଅଶ୍ରୁ କାହିଁ ? ମୋ ଦ୍ୱନ୍ଦ୍ୱହୀନ ବଂଧନର ହାସ୍ୟରେ ସ୍ୱପ୍ନର ଶୁଭ୍ରତା କ'ଣ ସତ୍ୟ ? ହେ ପ୍ରତାରିତ ପଳାଶର ମରୀଚିକା ମୋର ! ହେ ଅନୁତାପକାମୀ ବଂଧୁତ୍ୱର ଗେରୁଆ ସଂଧ୍ୟା ! ସ୍ନେହସିକ୍ତ ପାନଶାଳାର ନୂପୁର ନିକ୍ୱଣରୁ କିଂବା ଗ୍ଳାନିଚ୍ଛନ୍ନ ଘନୀଭୂତ ଜଡ଼ତାର ହାତମୁଠାରୁ କିଂବା ଶୁଭ୍ର ବେହରଣର ସ୍ଖଳିତ ନୀବିରୁ ମର୍ମଭେଦୀ ଗୀତର ସାକ୍ଷର ମୋତେ ଦିଅ । ବର୍ତ୍ତମାନ ଅଜ୍ଞାତ ନିଶ୍ଚଳ ଓ ଦିଂଗତର ବିବୃତ ଆତ୍ମାରେ ବାଦ୍‌ଶାହୀ ସିଂଧୁର ଅବିଶ୍ରାଂତ ଗନ୍ଧ !!

ଅକ୍ଷମତାର ଦମ୍ଭାରୁ ବର୍ତ୍ତମାନ କୁହୁଡ଼ିର ଧୂଆଁ ! ମୋ ସମଗ୍ର ସତ୍ତାର ପ୍ରଗଣା ହୁଲ୍‌ହୁଲି ଡାଆଣୀର ଜ୍ୱରରେ । ମୋ ଆର୍ତ୍ତର ସଂଗ୍ରାମରେ ଅଶାନ୍ତତେଜସ୍ୱୀ ପ୍ରଦୀପର ଶିଖା — ମୋ ରକ୍ତବର୍ଣ୍ଣୀ ଭୂମିର ନିର୍ବୋଧ ସକାଳ ମୌନମୟୀ ବଧୂ ପରି ଭଂଗିପଡ଼ୁଛି ଦରଦରେ ! ମୋହ-ଲୁହାର ପାଚେରି ଆରପାରିରେ ଗର୍ଜୁଛି ସମୁଦ୍ର ! ମୋ ଜୀର୍ଣ୍ଣ ସିଂହଦ୍ୱାରରେ ଉଦୟସ୍ୱପ୍ନର ଜୟଗାନ ତରଳି ଯାଉଛି ଅଂଧାରର ନିର୍ଦ୍ଦୟ ଧକ୍‌କାରେ ! ବର୍ତ୍ତମାନ ମୁଁ କାପାଳିକର ଜାନୁରେ ସମର୍ପିତ ନିଃସଂଗ ଦୈନ୍ୟ ଓ ଅକ୍ଷମତାର ଦମ୍ଭାରୁ କୁହୁଡ଼ି ବର୍ତ୍ତମାନ ।

**ପାଞ୍ଚ**

## ତିନି

ହେ କୈକେୟୀର ବିମୂଢ଼ ପ୍ରତିଜ୍ଞା ! ହେ ଦୁର୍ଯ୍ୟୋଧନର ଦୁର୍ଜୟ ଅଭିମାନ ! ବର୍ତ୍ତମାନ ଶୃଗାଳମାନଂକର ସମବେତ କଂଠସ୍ୱର ଓ ସର୍ପିଳ ସ୍ୱରର ପଣ୍ଡତରେ ମୁଁ ସଂଗୁପ୍ତ ଦୁଃଖର ପ୍ରଦର୍ଶନୀ । ବର୍ତ୍ତମାନ ଅନ୍ନର ହାହାକାର ଓ ମରୁଡ଼ିର ଉଚ୍ଛ୍ୱସିତ ହସ ! ମୋ ସଂଗଠିତ ସଂଘର ବଂଧରେ ଏକ ଅସନ୍ନ ମୁକ୍ତ ଘାଇ ! ବର୍ତ୍ତମାନ ସୃଷ୍ଟିର ଲ୍ୟାଣ୍ଡସ୍କେପ୍ ଦୋଳାୟିତ ଓ ଗର୍ଭର ନିଷିଦ୍ଧ ପ୍ରହରରେ କଂକାଳର କୁଠାରାଘାତ ।

ବର୍ତ୍ତମାନ ନିକଟତମ ସଂପର୍କ ଛିନ୍ନ । ଅପୂର୍ଣ୍ଣତାର ବୃତ୍ତରେ ଏକ ଅଜ୍ଞାତ ଅବବୋଧର ବୈରାଗୀ-ସଂସାର ! ଏକ ବିଛଂଦ ଆଂତରିକତାରୁ ଛିନ୍ନ ହେଉଛି ଚିହ୍ନ ଉତ୍ସର ମାୟା । ବର୍ତ୍ତମାନ ମୋହର ସାରଂଗୀରୁ ବଂଶୀତା'ର ଉଦଭ୍ରାଂତ ମୃଷ୍ଟି । ସମସ୍ତ କଳଂକିତ ସତୀତ୍ୱର ନିଷ୍ଠାରୁ ଆନତା ବିଶ୍ୱାସିନୀର ଚିତ୍ତ ଆଜି ଦ୍ରବୀଭୂତ ! ଅପବାଦର ଦୁର୍ଗମ ସଂଶୟରେ ଛିନ୍ନଭିନ୍ନ ମୋର ସବୁଜ ଅରଣ୍ୟାନୀ । ହେ ମୋର କର୍ଣ୍ଣର ଦାୟାଦ ! ହେ ମୋର ଖଣ୍ଡାଖ୍ୟାନ ମୌନତାର ବିଧ୍ୱସ୍ତ ବାର୍ଦ୍ଧି ! ଓ ମୋର କୁନ୍ତୀର ଅଶ୍ରୁଳ ନାରୀତ୍ୱ ଏବଂ ଗାଂଧାରୀର ବିଭକ୍ତ ସତୀତ୍ୱର ଅବଦମିତ ଇଚ୍ଛା ! ଆଜି ଅମାନୁଷିକତାର ନିର୍ଲଜ କାର୍ପଣ୍ୟରେ ମୁଁ ନିଶ୍ଚିହ୍ନ ରହସ୍ୟର ଏକ ଉଦ୍ଭିନ୍ନ ସ୍ନେହାଂକୁର !!

ମୋ ଗତର ପାଚେଖି ଆଜି ହସୁଛି ! ହସୁଛି କଂଗୃତାଆଣୀର ଓଲଟ ପ୍ରୀତି ! ଆଉ ଦୁର୍ବାର ସ୍ୱପ୍ନର ବୀଜରେ ଚେତନାତୀତ ନିର୍ବୋଧ ସଂକେତ । ବର୍ତ୍ତମାନ

ହାଂଡି, ଗ୍ରୁଂଚୁଣ୍ଣୀ, ଚମଡ଼ା ଓ ହାଡ଼ର ଷଡ଼ଯନ୍ତ୍ର ! ଓ ବରଫ କାଁଦିବାର ଛଳନାପୂର୍ଣ୍ଣ ସିକ୍ତ ମାଦକତା !

ବର୍ତ୍ତମାନ ଅବ୍ୟକ୍ତ ବାର୍ତ୍ତାର ନିମନ୍ତ୍ରଣ ! ଲାଳାଚପଳ ବର୍ଣ୍ଣର ଔଜ୍ଜ୍ୱଲ୍ୟରେ କଂପମାନ ମୂନ୍ଢ କଠୋରତା !!

ବର୍ତ୍ତମାନ ଅସ୍ପୃଷ୍ଟ ଅନୁଭୂତିର ରଂଜନ-ବିଳାସ । କଦଂବର ଗଂଧ ଓ ପକ୍ୱ ଧାନର ବାସ୍ନାରେ ନର୍ଦ୍ଦମାର ସଙ୍ଗୀତ ଡାକସ୍ୱ । ବାରାଂଗନାର ପ୍ରୀତିପ୍ରଦ ଅଂଗନରେ ସଂଦେହ ମୁକ୍ତ କ୍ଷୁଧାର ଆର୍ତ୍ତନାଦ । ହେ ମୋର ଶଚୀ, ମେନକା ଓ ଉର୍ବଶୀର ଦଳ ! ହେ ମୋର ଅଗଣିତ ଦାସୀ ପରିଚାରି ଓ ଗୃହପଦାରଗଣ ! ଏବଂ ହେ ମୋର ଐରାବତ ଉଚ୍ଚୈଶ୍ରବା ଓ ଗର୍ଦ୍ଦଭର ପାରିଷଦଗଣ ! ଆଜି ମଧ୍ୟାହ୍ନର ଖରା ଖାଲି ଜଳୁଛି ! ଜଳୁଛି ବନ୍ୟାର ପ୍ରବାହରେ ସୁକ୍ରାଂତ କଳ୍ପନାର ଅପରାଂହ୍ନ ପୁଲକର ତନୁ !!

ବର୍ତ୍ତମାନ ସ୍ମୃତିମୟ ଅଂଧାର ସମୁପଗତ ଓ ଆନଂଦର ଉଲ୍କାମାନେ ନୃତ୍ୟରତ । ସେମାନଂକୁ ଘେରି ନାଚୁଛଂତି ମୋ ବିହ୍ୱଳତାର ଗୁଚ୍ଛ !!

କୁହୁର ଅରଣ୍ୟ ଓ ଫୁଲର ମେଳା
ଭଂଗାପୋ'ଲ ଏବଂ ବିସ୍ମୟର ଅବାକ୍ ପୃଥିବୀ ।
ଦୃଷ୍ଟିର ଦିଗଂତରେ
ପାହାଂଡ଼ିଆ ନଦୀର ବିଭସ୍ତ ସ୍ୱପ୍ନ !!

ଯଂତ୍ରଣାର ଆକାଶ ଆଉରି ବିଳଂବିତ । କନ୍ୟସୀ ଲକ୍ଷ୍ମୀର ଜଙ୍ଘା ଆଉରି ମୁକ୍ତ ଓ ବିଳଂବମାନ । ମୋ ପୁରୁଣା ଉଦ୍ଦେଶ୍ୟହୀନ ବସ୍ତୁଙ୍କ ସ୍ୱରରେ ପ୍ରତିଧ୍ୱନିର ଶୃଂଗାର !

ବର୍ତ୍ତମାନ କୁଡ଼ି କୁଡ଼ି ଭସ୍ମସ୍ତୂପ
ଓ ସାଇରେନ୍‌ର ନିସ୍ତବ୍ଧତା !
ବର୍ତ୍ତମାନ ଅଜସ୍ର ଗଳିର ସ୍ୱର୍ଗରେ
ରିକ୍‌ସାର ଟିଂ ଟିଂ ଶବ୍ଦ ।

ହେ ମୋର ପ୍ରାଣାଂତକ ଅପରେଷ୍ଟାର ନଗ୍ନତା ! ହେ ମୋର ନାମହୀନ ମୃତର ନର୍ମୋକ ! ଆଜି ମୋର ପାଂଡୁର ବ୍ୟକ୍ତିତ୍ୱର ମୁହୂର୍ତ୍ତରେ ବିଚିତ୍ର ହସର ସିଂଫୋନୀ । ଆଜି ମୋର କାଂଦୁର ମୁଁ ହିର ସ୍ପୃଷ୍ଟରେ ଅସହ୍ୟ ବେଦନାର ଲୁତଜାଳ । ହେ ମୋର ଦୁର୍ଘଟନାର ଅମରାବତୀ ! ହେ ମୋର ବେଦନା-ବିଧୁର ସଂଗୀତର ପରିପୂର୍ଣ୍ଣ ସଂକଳନ ! ତୁମେ ମୋର ନିଃସ୍ୱ ଅଂତସ୍ତଳର ଝଂକାର ପାଶବତାରେ ନିମଗ୍ନ ହେବାର ଅନୁନୟ କର ଏବଂ ମୋର ସକଳ ବିଜନ୍ମ ଅଧୀରତାରୁ ମୋତେ ସାଂତ୍ୱନାର ଆଲୋକ ଦେଖାଅ !

ବର୍ତ୍ତମାନ ଆତ୍ମ-ଜଗତର ସୁବର୍ଣ୍ଣ ମୁହୂର୍ତ୍ତ ଓ ଅନେକ ସମ୍ଭାବ୍ୟ ଉଚ୍ଛ୍ୱାସର ଦସ୍ତାବ୍ଦ୍ ଉପସ୍ଥିତ ! ଗ୍ରୀଷ୍ମର ମଧ୍ୟାହ୍ନରେ ପଞ୍ଚଜନ୍ୟର ଧ୍ୱନି ଓ ଉଦ୍ଧତ ବର୍ଷାର ଆଷାଢ଼ରେ ଲୁହର ସମୁଦ୍ର !!

ଏକ କଲ୍ୟାଣମୟୀ ହାତର ସ୍ପର୍ଶରେ
ମଡ଼ା ସବୁ ପୁନର୍ଜୀବନ ପ୍ରାପ୍ତ ।
ଓ ଅବବୋଧର ତରଙ୍ଗରେ
ନୀଳରଂଗର କଞ୍ଚ ମୃଦୁ ହସ ॥

# ସ୍ୱପ୍ନ-ସଂସ୍ପର୍ଶ

## ଏକ

ମୁଁ ଏକ ଖଦ୍ୟୋତର ମହିମା । ଏକ ପ୍ରଜାପତିର ଲଘୁ ଡେଣାରେ ମାଧୁରୀର ପ୍ରତ୍ୟୂଷ ! ଊର୍ଣ୍ଣନାଭର ପ୍ରୀତି ଜାଲରେ ମୁଁ ବିନ୍ଦୁ ବିନ୍ଦୁ ଶିଶିରର ସ୍ୱପ୍ନ । ଏକ ନିର୍ବିକାର କୂର୍ମର ନର୍ମରେ ଯୁଗ ଯୁଗର ନିରଂକୁଶ ବନ୍ଧନ ମୁଁ । ନଈଁର ବୋଝ ବୋହି ଏକ ବିଶ୍ରସ୍ତ ଅଶ୍ୱତ୍ଥରେ ମୁଁ ଜ୍ୟୋତିଷ୍ମାନ୍ ସ୍ୱଗତ-ଛନ୍ଦ !

ଏକ ବନମୁକ୍ତ ଯନ୍ତ୍ରଣାର ସ୍ୱର୍ଣ୍ଣାଭୂତ ମାଟିର ବେଦନା ମୁଁ ! ନିବିଡ଼ତମ ଆଶ୍ଳେଷର ଶିହରଣରେ ପ୍ରଣୟର ଆଦ୍ୟ ସଂସ୍କାର । ଦାହହୀନ ଜୀର୍ଣ୍ଣତାର ସ୍ୱାଗତରେ ଏକ ପ୍ରମତ୍ତ ଚନ୍ଦ୍ରକୀର ଅଂଗବାସ । ଧୂପର ଅକୁଣ୍ଠ ଆତ୍ମଦାନରେ ମୋର ଗମ୍ଭୀର ଚେତନାର ଦ୍ୱାର ଉନ୍ମୁକ୍ତ । ସ୍ନାୟୁର ରନ୍ଧ୍ରେ ରନ୍ଧ୍ରେ, ବଲ୍ଲୀର ମର୍ମେ ମର୍ମେ, ତୃଣରେ ତନ୍ଦ୍ରାତୁର ଦୀର୍ଘଶ୍ୱାସରେ ଓ ଦେଦୀପ୍ୟମାନ ପ୍ରଦୀପର ଶିଖାରେ ଶିଖାରେ ମୁଁ ଏକ ନିର୍ଜନ ମୁହୂର୍ତ୍ତର ପ୍ରାର୍ଥନା !

ବର୍ତ୍ତମାନ ତରଂଗର ଗାନ
ଓ ବର୍ଷାର ନୂପୁର ଧ୍ୱନ ।
ବର୍ତ୍ତମାନ ଜଡ଼ତାର ଘର୍ମାକ୍ତ ସ୍ୱପ୍ନରେ
ଅବଲୁପ୍ତ ନିର୍ମମ କ୍ରନ୍ଦନ ।।

ହେ ମୋର ନିର୍ଦ୍ଦୟ ଶାଳଗ୍ରାମ ! ହେ ମୋର ଜ୍ୟୋତ୍ସ୍ନାର ଦ୍ରବୀଭୂତ ସ୍ରୀଢ଼ର ଆକାଶ ! ହେ ମୋର ନିର୍ବାକ ଚକ୍ଷୁର ଜଅସ୍ତ୍ରୀ ! ହେ ମୋର ନିଲାମ୍ବିତ କଳ୍ପନାର ଅମୃତମୟ ଜୀବନ ! ମୋର ସଜଳ କ୍ଷମାହୀନ ବେଦନାକୁ ଓ ଯାବତୀୟ ଲାଂଛିତ କର୍ଣ୍ଣଫୁଲକୁ ଆଦୌ କ୍ଷମା ଦିଅ ନା ! (?) ମୋର ପୁଂଜୀଭୂତ କାରୁଣ୍ୟର ନିର୍ମମ ପ୍ରତିଶ୍ରୁତିକୁ ଓ ଆତ୍ମସତ୍ତାର ଦୟନୀୟ ଅନନୁଭବକୁ ଆଦୌ କ୍ଷମା କର ନା !

ବର୍ତ୍ତମାନ ଅଂଧାରର ସଂଗୀତ ।
ଓ ବିଶୃଂଖଳ ସ୍ଫୁଲିଂଗର ଦେହରେ
ପୀଡନର ଫୁଲଶଯ୍ୟା !
ବର୍ତ୍ତମାନ ନିର୍ଜନ ବେଳାଭୂମି କାଁଦୁଚି !
ଓ ମାଟିର କରୁଣ ବକ୍ଷରେ
କୋଦାଳର ଚୁଂବନ ଅନିବାର ।।

ହେ ସ୍ରାବହୀନ ରକ୍ତିମ ଗୋଚର ! ହେ ମୋର ଦଳି ଦଳି ଗୁଗଲ ଓ ଭୁଜଂଗର ବଂଶଧର ! ହେ ମୋର ମଦମତ୍ତ ପ୍ରତ୍ୟାଜନର କ୍ଷିପ୍ତ ଶୁଳ୍କିଶିଖାର ଆସକ୍ତି ! ମୋ କଂଟକିତ ଶଯ୍ୟାର ଦୁଇପାର୍ଶ୍ୱରେ ତୁମର ଶୋଭାଯାତ୍ରା ଗୁଲୁ । ଓ ବାସୁକୀର ସୁଂଦର ସ୍ୱପ୍ନ ଅନ୍ତଃପୁରରେ ମୋର ସକଳ ବାସ୍ତବତା ହରାଉ ତାର ନିଜସ୍ୱ ଛଂଦ !!

ବର୍ତ୍ତମାନ ଔଷଧର ଆବାହନ ।
ନିଦ୍ରାହୀନ ସ୍ତବ୍ଧତାର ବୁକୁରେ
ଅନାଦି ଯୁଗର ବିଚ୍ଛେଦର ସ୍ମୃତି !
ଓ ଜନ୍ମାଂତରର ସାଧନାରେ
ବିସ୍ତୀର୍ଣ୍ଣ ଆକାଶର ଆବେଗ ।

ରଜନୀଗଂଧା ମୃତ ! ତାର ମସ୍ତକରେ ଫାଟି ପଡୁଚି ଶକ୍ତିତାର ଗ୍ଲାନି !
ସୂର୍ଯ୍ୟର ପରାହତ ବ୍ୟକ୍ତିତ୍ୱରେ ଅସଂବୃତ କାମନାର ଦୁର୍ଜୟ ଅଭିସାର !!

ହେ ସମୁଦ୍ର ! ହେ ଲୀଳାଚପଳ, ଊର୍ମିମାଳିନୀ ମୁଖରିତ ନିର୍ବିକାର ସମୁଦ୍ର ! ହେ ପ୍ରଶାଂତ ଆକାଶର ଉଦାର ମହତ୍ତ୍ୱ ! ହେ ଜୀବନର ଅଂତହୀନ ଦୁଃଖର ନୀଳହ୍ରଦ !

ତୁମର ସ୍ମିତର ସଂଗୀତରେ ମୁଁ ପରିପୂର୍ଣ୍ଣ । ଉଦାସ ବେଳାଭୂମିର ବିଦଗ୍ଧ ମୌନତାରେ ମୋର ପ୍ରାଣର ବାଣୀ ମର୍ମିତ !

ବର୍ତ୍ତମାନ ବିକଳ ଛଂଦର ଆର୍ତ୍ତନାଦ !
ଉଲଂଗ ଶିଶୁର ସ୍ୱପ୍ନବିଭୋର ସ୍ପଂଦନରେ
ପୂର୍ଣ୍ଣିମାର ପ୍ରାଣଭଗ୍ନ କଲୋଚ୍ଛ୍ୱାସ !
ବର୍ତ୍ତମାନ କଂକାମାନଂକର ଶୋଭାଯାତ୍ରା !
ଓ ଉନ୍ମିଳିତ ଧୂର୍ଜଟିର ଧ୍ୟାନରେ
ସମର୍ପିତ ଯୋଗ୍ୟ ପତଂଗମ ॥

ହେ ପ୍ରିୟତମ ଜନ୍ମର ଅସ୍ତିତ୍ୱ-ସ୍ୱାକ୍ଷର ମୋର ! ହେ ଅବଲୁଂଠିତ ଶୁଭ୍ରତାର କୁଂଠାହୀନ ଆତ୍ମ-ସମର୍ପଣ ! ହେ ରସୋତ୍ତୀର୍ଣ୍ଣ ନୈପୁଣ୍ୟର ଅଂତର୍ନିହିତ ସ୍ୱରସାମ୍ୟ ! ତୁମର କଷ୍‌କପଟ ବର୍ଣ୍ଣର ଅନୁଲେପନରେ ଛଂଦାୟିତ ପ୍ରାଣର ନମନୀୟତା !

ଆଜି ବିଭାସ ମୂର୍ଚ୍ଛିତ !
ଦିଗ୍‌ବଧୂର ଶବ୍ଦରେ
ଅବ୍ୟକ୍ତ ବ୍ୟଥାର ସହସ୍ର ପ୍ରଣିପାତ ॥
ବର୍ତ୍ତମାନ ଅତଥ୍ୟର ସମାବେଶ !
ଓ କାମଧେନୁର ସ୍ତନ କ୍ଷରିତ ॥

ବର୍ତ୍ତମାନ ସ୍ପର୍ଶର ପ୍ରଶସ୍ତି ! କୋଲାହଳର ଯାତ୍ରାରେ ମୁଁ ମୌନତାର ଅଧୀଶ୍ୱର ! ଏବଂ ରଶ୍ମି ରଶ୍ମି ଯଂତ୍ରଣାର ଫୁଲରେ ପରିପୂର୍ଣ୍ଣ ଆତ୍ମାର ସଂଭ୍ରାଂତ ତାଳ !

ଘୁଇ

ହେ ମୋର ଖବନାର ସ୍ଥିର ସ୍ତଂଭ ଓ ମୃତ ଉପତ୍ୟକାର ବଜ୍ରପୁଷ୍ପଗଣ ! ହେ ଗୁଂଡୁଚମୂଷାର ଗ୍ରାମଣୀ ଚଂଚଳତା ! ହେ ମୋର ଅନୁପ୍ରାଣିତ କ୍ଷଣସ୍ଥାୟୀ ଚତ୍କାର ! ହେ ମୋର ଫାଶୀଖୁଂଟରେ ଝୁଲୁଥିବା ନିରପରାଧ ବ୍ୟକ୍ତିତ୍ୱର ପ୍ରାଂଶୁ ଉଦାତ୍ତତା ! ତୁମ-ମାନଂକର ସ୍ତଂଭିତ ଇଚ୍ଛାର ବୃଂତରେ ମୁଁ ଏକ ନିଷ୍ଫଳ ଫୁଲର ଅନୁରକ୍ତି ! ତୁମ-ମାଂନକର ସ୍ଥିର ଦୃଷ୍ଟିର ଅଗ୍ରଭାଗରେ ମୁଁ ଏକ ସଂଘର୍ଷମୁଖୀ ତାରୁଣ୍ୟର କବିତା !

ସହସ୍ର ପଦପାତରେ ଘରଚଟିଆର ଅନ୍ତର୍ଦ୍ଧାନ ! ଛିଦ୍ରାର ଆତ୍ମଶଯ୍ୟାରେ ଦଂଷ୍ଟ୍ରଧ ମକର ସୈନ୍ୟ ସମାବେଶ ! ମୋ ଫୁଟଂତ ଫୁଲର ପ୍ରାର୍ଥନାରତ ଅଭିବ୍ୟକ୍ତିରେ ମୌଳିକ ଅନୁନୟର ବିନୀତ ସଂଘର୍ଷଣ ! ଝଂଦସୀ ନାହାର ମର୍ମଭେଦୀ ଉଦ୍ଭୃତ ଅଧୀନତାରେ ମୋର ପ୍ରତ୍ୟର୍ପଣର ଆକସ୍ମିକ ପ୍ରବଣତା ! ହେ ମୋର ପ୍ରଳଂବ କାତରତାର ବୋଧଶକ୍ତି ! ହେ ମୋର ସ୍ୱର୍ଣକାତର ଅନ୍ତିମସ୍ତ ଜଗତ୍ ! ହେ ମୋର ପ୍ରଲୋଭନର ମାନସିକ ଉଷ୍ମା ! ଏବଂ ଔଦ୍ଧତ୍ୟର ସଂକ୍ଷିପ୍ତ ଓ ଅନିଶ୍ଚିତକର ସାଧନାର ପ୍ରବାହ ! ଆଜି ସଂଚୟସ୍ପୃହାନ ବଂକ୍ତିର ନିଃସ୍ୱତା ପରି ମୋର ସଂପଦ କାହିଁ ? ଆଜି ଅବଦ୍ଧୃତ ଚକ୍ଷୁଙ୍କର ତ୍ରିଗୁଣିତ ଚେତନା ପରି ମୋର ଗୋଲମିର ବେଙ୍ଗଲା ଅନିବାର୍ଯ୍ୟ !

ବର୍ତ୍ତମାନ ବର୍ବରର ପଦଚକ୍ର !
ଓ ସମ୍ୟକ୍ ଖାତର
ମନୁଭୁଲଣିଆ ତର୍ପଣ !

ବାର

ବର୍ତ୍ତମାନ ଚର୍ମଚକ୍ଷୁର ଗୋଷ୍ପଦ
ଓ ନବୋଧତାର ଏଡୁଂଡିରେ
ଟମକାଇବାର ଅପ୍ରସ୍ତୁତ ଆଶଂକା ॥

ଅନଭ୍ୟସ୍ତ ଉଦ୍‌ବିଗ୍ନତାର ସମର୍ଥିତ ଆହ୍ଲାଦ । ଅନୁପଦସ୍ଥ ସ୍ୱାସ୍ଥ୍ୟର ଝୋଲା-ମୁଣ୍ଡିରେ ଅସତର୍କ ସ୍ୱାଧୀନତାର ବିବର୍ଣ୍ଣ ଅଂଧାର । ଆଜି ଭୂତଗ୍ରସ୍ତ ଜାତିର ସଭ୍ୟତାର କଙ୍କାଳରେ କର୍କଟର କୁସୀଦଜୀବ । ହେ ମୋର ପିତୃମାତୃହୀନ ସଂତାନ-ଗଣ ! ହେ ମୋର ସଂଗଠନଶାଳୀ ପ୍ରିୟଂବଦର ଛଳନା ଔଦାର୍ଯ୍ୟ, ଏବଂ ହେ ମୋର ରୂପହୀନା ନାଗରିକାର ଟୁକୁରା ଟୁକୁରା ସ୍ୱପ୍ନର ଜ୍ୱଳଂତ ଖଂଡ ! ହେ ମୋର କୁଗ୍ରସ୍ତ, ବ୍ୟାଧିଗ୍ରସ୍ତ ବ୍ୟର୍ଥତାର ସଫଳ ରୂପାୟନ ! ତୁମମାନଂକର ଆର୍ତ୍ତି ଓ ଦୁର୍ଦ୍ଦମ ସଂଘର୍ଷରେ ମୁଁ ଏକ ସ୍ଖଳିତ ଖିଆଲର ଶ୍ରୁତିମଧୁର ରୁକ୍ଷତା !!

ବର୍ତ୍ତମାନ ମହୁମାଛିର ଦଳ
ଓ କୃଷ୍ଣକାୟ ଝାଡୁଦାରର
ବଂଶବଦ ଉପସ୍ଥିତି !
ବର୍ତ୍ତମାନ ଅପହୃତ
ମସୃଣତାର ପିଠିରେ
ବର୍ଚ୍ଛା ଓ ଲଠିର ଶବ୍ଦର ଚୁଂବନ !
ମୋର କାପୁରୁଷତାର
ହେ ଯୌବନର ଉପବନ !
ଜଘନ୍ୟ ନଶ୍ୱରତାର ବିନାଶରେ
ଭ୍ରମର କି ବ୍ୟାକୁଳ ପ୍ରତୀକ୍ଷା ?

ଆଜି ଗେଣ୍ଡା ଓ ପୃଥୁଳକାୟ ଲୋକଂକର ଗହଳି ! ପର୍ଯ୍ୟାପ୍ତ କଳାମାର୍କାର-ମାନଂକର ଛକାପଂଝାର କୌଶଳ ଓ ଉତ୍କୃଷ୍ଟ ମଦ୍ୟପାନରେ ଶତ ଶତ ଛିଦ୍ରର ଦୁରବସ୍ଥା । ମାମୁଲି ସଂସ୍ଥାନର ବିନ୍ୟାସରେ ମୁଁ ଏକ ପ୍ରହେଳିକାର ବାହ୍ୟ ଓ ଭେତର

ପ୍ରସାଧନର ସହଜାତ ଇଂଦ୍ରିୟ !!  ମୋର ଚିତ୍ରହଂସ ପ୍ରାଣରେ ଉଦ୍‌ବେଗର ବାହାର ପୋଷିଛିକୋ ମୁଖରିତ ?

ପ୍ରତାରଣମାନ ମିଥ୍ୟାର ସ୍ଫୁଟବାଦୀ ତର୍ଜନରେ ମୋର ପ୍ରକାଶ୍ୟ ଅନୁଶୋଚନା ! ହେ ମୋର ଅମୀମାଂସିତ ମୀମାଂସାର ସମ୍ମୁଖ ପ୍ରତିରୋଧ ! ହେ ମୋର ଜନ୍ମାନ୍ଧମୂର୍ଖୀ ଜଳତରଂଗର ନିଭୃତ ସଂଳାପ ! ହେ ମୋର ସ୍ୱେଚ୍ଛାପର ଅଧମ ପ୍ରାଣର ଓ ନିଷ୍କାମ କର୍ମର ସ୍ଖଳିତ ଉତ୍ତାପ ! ତୁମମାନଂକ ହସ୍ତେଜିତର ସଂଭ୍ରମତାକୁ ଭୁଲି ମୁଁ ଏକ ଅଭିମାନୀ ସମ୍ରାଟର ଶିଥିଳ ତାତ୍ପର୍ଯ୍ୟ ! ତୁମମାନଂକ ସଂଗତର ଅସଂଗତ ଓ ସାଂକେତିକତାର ସୃଷ୍ଟି କେଂଦ୍ରିକ ସତ୍ତାର ମୁଁ ଏକ ଦୁର୍ବିପାକର ଅନର୍ଗଳ ଅଶୀର୍ବାଦର ପ୍ରମାଣ !!

ଆଉ ପ୍ରତୀକ୍ଷାର ଅବକାଶ ନାହିଁ ।  
ଆଉ ହୀନତମ ପରିଚ୍ଛଦ ସର୍ଜନା  
ଓ ସଂକୀର୍ଣ୍ଣ ସମ୍ମେଳନର ମର୍ଯ୍ୟାଦା  
କିଂବା ଦାନଶୀଳ ସ୍ମୃତିର ବ୍ୟାହତରେ  
ହଜିଯିବାର ଅଶଂକା ମୋର ନାହିଁ ।

ମୋତେ ଧରିଚି ଏକ ପ୍ରଦୀପ୍ତ ଶିଖାର ହାତ । ମୁଁ ଧରିଚି ଏକ ଗର୍ବିତ ସଂଗୁପ୍ତର ପାଦ । ମୁଁ ଝୁଲୁଚି ଏକ ଅବଲଂବନହୀନ ଶାଖାର ଦୋଳିରେ ଓ ମୋତେ ଝୁଲଉଚି ଏକ ବିଡଂବିତ ଚିତ୍ତବୃତ୍ତିର ମାୟା !

ବର୍ତ୍ତମାନ ଆକାଶ ମେଘାଚ୍ଛନ୍ନ ।  
ଓ 'ଫେରେ ହେବସ୍ ପଡଧ୍ୱନ' !  
ବର୍ତ୍ତମାନ ଜଗତାର ସମୁଦ୍ର, ଶାଂତ  
ଓ ଚକ୍ରିତ ପକ୍ଷୀଂକର ଡେଣାରେ  
ମୋର ବନ୍ଧମୁକ୍ତ ଚକ୍ଷୁର ଚପଳତା ?

ତିନି

ବର୍ତ୍ତମାନ ଅସ୍ତ୍ର ର ତତକ୍ଷା, ଅପରାଜିତାର ଚୌରୁନ ଓ ରକ୍ତାକ୍ତ କପୋଳର ଗୁଂଜନ ବିଳଂବ ନାହିଁ । କ୍ଷତ ବିକ୍ଷତ ପୁବକନ୍ୟାଂକର ଛଳ ଛଳ ଅସ୍ଥିର ହୃଦୟର ବର୍ତ୍ତମାନ ମୌସୁମୀ ! ଅଂଧ ଜବନର ବସ୍ତ୍ରସବୁ ପାକୁଳ କରି ଧୂସର ମରୁର ଆର୍ତ୍ତନାଦ । ହେ ମୋର ଯୌବନର ସ୍ୱପ୍ନପତ୍ର ! ହେ ମୋର ଜବାନ୍ ଆଗ୍ନେୟ ଶପଥର ମଂତ୍ର ! ହେ ମୋର ସୁରକ୍ଷିତ ଦୈନ୍ୟର ଅଂତହୀନ ପ୍ରଶାଂତି ! ଆଜି ସ୍ମୃତିହୀନ, ପୂର୍ଣ୍ଣତାର ନବତମ ଅଭିସାର ।

ବର୍ତ୍ତମାନ କ୍ଲାଂତର ଜ୍ୱରର ଉଦ୍‌ଯାପିତ ।
ଓ ଅଗଣିତ ନାମହୀନ ବୃକ୍ଷରେ
ଫୁଲର ଅସଂଭବ ଉଚ୍ଛ୍ୱାସ ।
ବର୍ତ୍ତମାନ ପଶ୍ଚିମ ଆକାଶରେ
ଇନ୍ଦ୍ରଧନୁର ଉତ୍ସବ !!
ଏବଂ ପୃଥିବୀର ବୃଦ୍ଧ ପକ୍ଷୀର ସଂଧ୍ୟାରେ
ଦିଗଂତର ମୌନ ସ୍ୱୀକାର !

ବର୍ତ୍ତମାନ ଧୂମକେତୁର ପ୍ରସ୍ଥାନ । ତୂଣ୍ଠାନ ଖୁରୁ ଆତଂକ ଓ ମାନସିକ ପ୍ରଗଲ୍‌ଭ ଚଞ୍ଚଳତାର । ପ୍ରସ୍ଥାନ ପରାଜିତ ରହସ୍ୟର ଓ କୃଷ୍ଣଣୀ ଦାଂଭିକର ଚତୁରତା ! ବର୍ତ୍ତମାନ କାଳଜୟୀ କୁହୁକର ବିଜୟ ନଗାରା ଉଡ୍ଡୁଚି ଓ ପଲ ପଲ ମଦ ବିରହୀର ଦେହରେ

କୁଂଠାଘାତ କରୁଚ କିଏ ? ଓଃ ସେମାନେ ମୋର ଅତି ପରିଚିତ ବଂଧୁତ୍ୱର ଅତୁଳ ସ୍ମାରକ ! ଓଃ, ସେମାନେ ମୋର ସ୍ୱର୍ଣ୍ଣଚୂଡ଼ାରେ ପରିବେଷ୍ଟିତ ପ୍ରାଣଧାରୀ ତୃଷ୍ଣାର ସହଚର ! ସେମାନେ ଏକଲା ହେବାର କାରଣ କ'ଣ ? ସେମାନେ ଉଦ୍‌ଗ୍ରୀବ ଓ ମୂର୍ଚ୍ଛିତ ସୀତାରରେ ଲଜ୍ଜାସ୍ମିତ ଅଂଧକାର । ସେମାନେ ହସୁଚଂତି ବେଧଡ଼କ ! ବୋଧହୁଏ କ୍ରମଶଃ ଦୌଡ଼ୁଚଂତି ମୋର ନିର୍ମିତ ମଂଦିରର-ମୁଖଶାଳା ଆଡ଼କୁ ! ଆସଂତୁ । ସେମାନଂକୁ ବାଧା ଦିଅ ନାହିଁ ଓ ସେମାନଂକୁ ସଂବର୍ଦ୍ଧନା ଜଣାଇବାର ସଫଳ ଆୟୋଜନର ବ୍ୟବସ୍ଥା ହେଉ !

ବର୍ତ୍ତମାନ ସାତତାଲ ସଂକ
ଓ ଶୂନ୍ୟତାର ସିନ୍ଧୁ ॥
ବର୍ତ୍ତମାନ ତୀକ୍ଷ୍ଣ ପ୍ରସ୍ତରର
ଅଜସ୍ର ବେତ୍ରାଘାତ ।
କେତେକୋଟି ଜୟଧ୍ୱନିର ଫ୍ରେମରେ
ସମଗ୍ର ପୃଥିବୀ ପରିତୃପ୍ତ (?)
ଅଥ ବସଂତର ସଂଧ୍ୟା
ନାହିଁ । ନାହିଁ ମୋର ଯୌବନର ମମତା ।
ବର୍ତ୍ତମାନ ନୀଳାଭ୍ ରେତ୍‌କୁ
ମୁଁ ପ୍ରଦକ୍ଷିଣ କରୁଚ ॥

ହେ ମୋର ଅନୁଶୋଚନାର ବହ୍ନି ! ହେ ମୋର ଛାୟା-ମ୍ଳାନ ଆଶାର ସଂପ୍ରୀତି ! ହେ ମୋର ରୁଦ୍ଧତାର ନୀରବ ଅଶ୍ରୁପାତ ! ହେ ମୋର ଲକ୍ଷ ଲକ୍ଷ ଉଲ୍‌କାର ଅପ୍ରତ୍ୟାଶିତ ଆକ୍ରମଣ ! ଆଜି ବଗତଶ୍ରୀତର ସ୍ୱାକ୍ଷର ନେଇ ମୃତଂଜ ସ୍ୱର୍ଗର ପଥ ଅତିକ୍ରମ କରିବାର ଇଚ୍ଛା ! ଆଜି ବିଜନ ଚାଟୁକାର କୋଣାଟରେ ଓ କଂକାଳର ସ୍ୱର୍ଣ୍ଣ ଚିହ୍ନ ଆତ୍ମାରେ ମୁଁ କସ୍ତୁରୀର ପ୍ରାଣର ସଂଚରଣ ! ଓ ବୁଲ୍‌ବୁଲ୍‌ର ଅଶ୍ରୁସଜଳ ଆଖିରେ ଶୋଭନା ମାଟିର ଦୃଶ୍ୟ ! ଯାହା ମୋର, ତୁମମାନଂକର ଓ ସେମାନଂକ ହୃଦୟର ସ୍ପଂଦନରେ ସୃଷ୍ଟିର ରଂଗଛଟା !!

ଘୋଷାଲ

ବର୍ତ୍ତମାନ ଅନାବଶ୍ୟକ ଶୋଚନାର
ବାରଂବାର ଆବୃତ୍ତି ।
ଏବଂ ନବୀନ ସୃଷ୍ଟିର ପାଦରେ
ଆହ୍ଲାଦର ଘୁଂଘୁର !!

ହେ ପୂର୍ଣ୍ଣିମାର କଂକାଳତ୍ୟକ୍ତ ଓ ବର୍ଦ୍ଧମାନ କାମନାର ଢଳଢଂଢୁଳ ଗୁଚ୍ଛ ! ହେ ନିଷ୍କରୁଣ ବିଧିବିଧାନର ଫଟା ବଂଶୀର ଚତ୍କାର ! ହେ ମୋର କ୍ଷୁବ୍ଧ ଚେତନାର ଉଖାସ୍ତି ଦଳ ! ଆଜ ଶିଶିରସିକ୍ତ ତୃଣଶଯ୍ୟାରେ ଶରଶଯ୍ୟା କାହାର ? ନିର୍ମଳ ଆକାଶର ନୀଳତୃଷ୍ଣାର ସାଗରରେ ଆତ୍ମହତ୍ୟା କରୁଚ କିଏ ?? ମୋତେ ଦାଆ ଓ କୋଦାଳର ସଂଗୀତ ଶୁଣାଅ !!

ବର୍ତ୍ତମାନ ସମସ୍ତଙ୍କର ଉପସ୍ଥିତି ।
ଓ ମୋର ବିନମ୍ର ପ୍ରସ୍ଥାନ ?
ଚନ୍ଦବାଲର ମନ୍ଥମ୍ନ ଆଶ୍ଳେଷରେ
ମୁଁ ଏକ ସମୁଦ୍ରର ବ୍ୟାକୁଳ ପ୍ରତୀକ୍ଷା ;
ଓ ପ୍ରାଚୀନତାର ଆତ୍ମାରେ
ନିମଜ୍ଜିତ ନୂତନତାର ସ୍ୱାକ୍ଷର ମୁଁ !!

ବର୍ତ୍ତମାନ ଅନ୍ତର୍ହିତ ମୋର ଗ୍ଳାନି । ବହିର୍ଗତ ମୋ ହୃଦୟ କାଳର ସ୍ୱର ।
ମୁଁ ଏକ ଅପ୍ରକାଶ୍ୟ ଶୋଚନାର ପଙ୍କପୂର୍ଣ୍ଣ ସତ୍ତାର ଆଧାର !!

# ଉତ୍ତରଣ

ଏକ

ବର୍ତ୍ତମାନ ରାତ୍ରିର ଯୌବନ । ଏ ଯୌବନର ଶାଖାରେ ଶାଖାରେ ଫୁଲ ଓ ଫଳର ସଂଭାର, ଓ ଅନେକ ଅପରିଚିତ ଶିଶୁ ଆତ୍ମାଙ୍କର କଅଁଳ ମୃଦୁ ହସ । ବର୍ତ୍ତମାନ ସ୍ୱପ୍ନର ଝରଣା ଓ ବାହ୍ୟଲତାର ସଂଗୀତରେ ଆମେ ଏକାନ୍ତ ତନ୍ମୟ । ଚଉଦିଗେ ଅଗଣିତ ଗୃହମୁଣ୍ଡୀଙ୍କ ଚତ୍କାର । ମୃତ ଜନ୍ମର ପରିତ୍ୟକ୍ତ ସ୍ନେହ ଆମକୁ ଚୁମ୍ବନ ଦେଉଛି ଅନ୍ଧକାର । ଶୂନ୍ୟତାର ପିଞ୍ଜରେ ଶିଶିରର ପାଦଶବ୍ଦ ! ଓ ରତିମଗ୍ନା ନାରୀର ମନରେ ଆକାଶର କାକୃଣ ।

ବର୍ତ୍ତମାନ ପ୍ରେତାତ୍ମାମାନଙ୍କର ଅଭିସାର । ଶିଶୁ ମନର ଓହ୍ଲଲରେ ଫାଶି ଦେଇଛି ଅନେକ ପ୍ରାଣିତ ହସ ଓ କାନ୍ଦୁରା ମୁହଁରେ ହସିବାର ଉପକ୍ରମ । ମୋ ସମ୍ମୁଖରେ ତାଳଗଛର ଗୁଳି, ଗୁଳିର ସ୍ୱପ୍ନ ଓ ସ୍ୱପ୍ନର ଭୂତ । ଅନେକ ସଂଶୟର ଛକରେ ସେମାନେ ଠିଆ ହେଲେ ଏବଂ କିଛିକ୍ଷଣ ପରେ ଆର୍ତ୍ତନାଦର ସ୍ୱାକ୍ଷର ଦେଇ-ଗଲେ । ଜୀବନ ଧନ୍ୟ ହେଲା !!

ରାତ୍ରିର ଯୌବନ ! ଝଗପତ୍ରର ଲୁହରେ ଗଢ଼ା ତାର ଦେହ । ଅନେକ ନର୍ତ୍ତକୀର ଶୋଚନାର ଦୃଶ୍ୟରେ ପ୍ରଣୟମୟୀ ଏ ରାତି । କାର ଅସ୍ପଷ୍ଟ ପଦଶବ୍ଦ ବାରି

ଭୂଲ କୁକୁରର ଘେଉ ଘେଉ ଶବ୍ଦରେ ଉଡ଼ିଯାଉଛି ତା'ର ଗୀତ ? ସୁବଧତାର ଚେଉ ଭାଂଗି ଗୀତ ଗାଏ ଅଂଧାର ଓ ଯଂତ୍ରଣାର ଶେଯରେ ନାସଂଗ ଚଉର ଶାଂତ ।

ଥାଉ ଭଗ୍ନ ତପସ୍ୟାର ଧୃତି ! ଥାଉ ମୃତ ଆତ୍ମାର କଥସ୍ମୃତୀ ! ଯାଉ ଅଂଧ ପିତୃତ୍ୱର ପରିଚୟ !! ବର୍ତ୍ତମାନ ରାତ୍ରିର ଯୌବନ ଓ ସ୍ୱପ୍ନରେ ଅସଂଖ୍ୟ ପ୍ରଦୀପର ସଭା !

ଯେତେ ପ୍ରତିଶ୍ରୁତ ବିଶ୍ୱାସର ନିଷ୍ଫଳତା ଆମର, ଯେତେ ଉଚ୍ଛ୍ୱସିତ ଶକ୍ତିର ବ୍ୟର୍ଥତା ଆମର, ଯେତେ ବିଖଂଡିତ ଆଶାର ସାମର୍ଥ୍ୟ ଆମର—ତୁମେ ସବୁ ରାତିର ଯୌବନ ଲାଭ କର ! ନିର୍ଗୁଟିଆ ମନର ପଥିକ ପରି, ପେଚା ଓ ବାଦୁଡ଼ିର ନିର୍ଭୟ ମନ ପରି ଓ ଧକ୍ ଧକ୍ ତାରାର ବିଶ୍ୱାସ ପରି ରାତିର ଯୌବନ ପ୍ରାପ୍ତ ହୁଅ ।

ବର୍ତ୍ତମାନ ଖଦ୍ୟୋତର ପ୍ରାର୍ଥନା । ଈଶ୍ୱରଂକ ଧ୍ୟାନ ଭଂଗ ଏବଂ ଶ୍ରେଣୀର ହାତରେ ରକ୍ତାକ୍ତ ବାସ୍ତବର କ୍ରୁଶ । ଟୁଟୁଚ ବଂଶୀର ସାତୋଟି ରଂଧ୍ର ଓ କଂସର ମଂତ୍ରଣାରେ କାଳୀୟଦଳନ ଅସ୍ମାରନ୍ତ ! ଭାଂଗିଲା ଗରୁଡ଼ସ୍ତମ୍ଭ ଓ ମିଛରେ ଗର୍ଜିଲା ସମୁଦ୍ର ' (?)

ବର୍ତ୍ତମାନ ନୀରବତାର ପ୍ରାର୍ଥନା । ପ୍ରାର୍ଥନା ଘାସଫୁଲର ଓ ଚନ୍ଦ୍ରକାର ଶୃଗାଳମାନଂକର । ପ୍ରାର୍ଥନା କଇଁଫୁଲର ଏବଂ କେଉ ବିଂଦୁ ଶୀଘ୍ରର । ବର୍ତ୍ତମାନ ରାତିର ଯୌବନ ଉତ୍ତରଳ ଓ ନବଜାତକର ନିରୁଦ୍ଦିଷ୍ଟ ଲକ୍ଷ୍ୟ ସମାଗତ ।

ବର୍ଷାର ଘୁଂଗୁର ଓ ସମୁଦ୍ରର ଆହ୍ୱାନ । ଆହ୍ୱାନ କାଣତନ୍ତ୍ରୀର ଓ ଝାଉଁର । ବର୍ତ୍ତମାନ ସ୍ମୃତିଂକର ରାଜସଭା । ମୋ ବିନିଦ୍ର ଚକ୍ଷୁରେ ମହାକାଳର ନିମଂତ୍ରଣ । ଆଉରି ଅନେକ ବିଳଂବ ତାର ଛଂଦ ! ଆଉରି ଅନେକ ଉତ୍ତର ତାର ଅଭ୍ୟର୍ଥନା !

ବ୍ୟସ୍ତତାର ନାଗ ଫାଶରୁ ଆମେ ମୁକ୍ତ ? ମୁକ୍ତ ଦୁଃଶ୍ଚିଂତାର ଆଲିଂଗନରୁ ? ବର୍ତ୍ତମାନ ବଂଗବ୍ୟାପୀ ଷଂଢର ଉଦ୍ଧସ୍ତ ଓ ପାଣିର ଚବ୍ ଚବ୍ ଶବ୍ଦ । ଅମର ପୂର୍ବେଷୁଗରେ ଅଂଧାର ଓ ଅଲୋକର ପ୍ରହେଳିକା ! ହେ ନବୀନ ଓ ଉଦ୍ଧତ ସୃଷ୍ଟିର ଯୌବନ ! ତୁମର ଫୁଲ ଫଲରେ ଷଂଗପଡ଼ ଯଂତ୍ରଣାର ଅକାଶ !! (?)

କୋଡ଼ଏ

ଦୁଇ

ବର୍ତ୍ତମାନ ଦିଗ୍‌ବଳୟର ତଂଗୁରୁ ଅଂଧାରର ପ୍ରସ୍ଥାନ ଓ ଆଲୋକର ନିଦ୍ରାଭଂଗ । ବନ୍ଧୁଜନର ଗ୍ଳାନି ଓ ବ୍ୟର୍ଥତାର ମଧ୍ୟ ସତ୍କାର ହେଲା ଏବଂ ନିର୍ମମତାର ଓଢ଼ଣା ଭିତରେ ରାତ୍ରିର ପଳାତକ ସହଚରଗଣ ଅନେକ ହସିଲେ । ହସଂତୁ ! କିଂବା ଆତ୍ମଗୋପନର ଇଚ୍ଛାରେ ଛଂଦ ହେଉଥାଂତୁ !

ବର୍ତ୍ତମାନ ଫୁଲର ପାର୍ବଣ । ପୃଥ୍ୱୀ ପାର୍ବଣର ମୂର୍ଚ୍ଛନାରେ ଆଲୋକ ମୂର୍ଚ୍ଛାହତ ଓ ପକ୍ଷୀର କଲୋଚ୍ଛ୍ୱାସରେ ହସ୍ପୁଟ ଶସ୍ୟକ୍ଷେତ୍ର । ବର୍ତ୍ତମାନ ଶିଶୁର କଂଠ ମସୃଣ ଓ ତରଂଗମୟ ମୁକ୍ତିର କୁଳଂତ ଗୀତ !

ତୁଷାରର ପ୍ରଲେପ କିଏ ଦେଲା ? ଦେଲା କିଏ ପ୍ରବାଳ ଆସ୍ତରଣର ପ୍ରମତ୍ତ ଆବେଗ ? ଏବଂ ଅତ୍ୟଂତ କାର୍ପଣ୍ୟର କାହାଣି ଶୁଣାଇଲା କିଏ ?

ବର୍ତ୍ତମାନ ସକଳ ମୃତ୍ୟୁ, ବିଭୀଷିକା ଓ ବିଭତ୍ସତାରୁ ମୁକ୍ତ ? ମୋର ଉପସ୍ଥ ସଂକୁଚିତ ଏବଂ ପୁଂଜୀଭୂତ ବିଶୃଂଖଳ ଇଚ୍ଛା ! ଉଦ୍‌ଭ୍ରାନ୍ତ ଅଗ୍ନିରେ ଅସମ୍ଭବ ପ୍ରଶାଂତିର ଉଦାସ୍ତ ।

ସ୍ନେହର ବାହୁ ବଳଂବିତ ଓ ସୁବିଧାବାଦୀଂକ ସମାବେଶ । ବନ୍ଧୁ ଧନ୍ୟବାଦର ଧ୍ୱନି ଓ ପୋଖରୀର ମାଛ ନିଃଶେଷ ! ଜୟ ହେଉ ଖରୁତାର, ଓ ଜୟ ହେଉ ଉଦ୍‌ଗାତାର ।

ଏକୋଇଶ

ବର୍ତ୍ତମାନ ଅଂଧାରର ପ୍ରଶ୍ନ

ଓ ପ୍ରଶ୍ନ ଆମ ଯଂତ୍ରଣାମାନଂକର ।

ବର୍ତ୍ତମାନ କୁହୁଡ଼ିର ଆକାଶରେ

ଉନ୍ମେଷ କାହାର ??

ବର୍ତ୍ତମାନ ମଧ୍ୟାହ୍ନର ଖରା ଜଳୁଛି । ଅନେକ ଆଶାର ଗର୍ଭବତୀ ସମୁଦ୍ରର ଲୁଣି ହାଓ୍ୱା । ସିଇ ଖରାର ନିଆଁରେ ସେକୁଛି ତାର ଦେହ ! ଓ ପୀଡ଼ିତ ଭିତର ଗହଳି ଠେଲି ଦୁର୍ବାର ଆଶୀର୍ବାଦର ବୋଝ ବୋହି ସମୟର କୁଆରରେ ଦଶଂଧର ଶୋଭା-ଯାତ୍ରା ! ଆମ ବିଧବା ସ୍ୱପ୍ନର କାଁଦଣାରେ ଭଗ୍ନଂଗ ଇଚ୍ଛାକୁ ବିଦୀର୍ଣ୍ଣ କରି ବର୍ତ୍ତମାନ ମଧ୍ୟାହ୍ନର ଖରା ଦଂଶାୟମାନ ଓ ସମୁଦ୍ର ଶୂନ୍ୟକ ।

ଆମ ସ୍ୱପ୍ନର ଡଂଟିରେ କିଏ କୁଠାରାଘାତ କଲା ! ଆମ ଆନଂଦର ମୁକୁଳିତ ପତ୍ରକୁ ଛଡ଼ାଇ କିଏ ଚିକି ଚିକି କଲା ? ସମସ୍ତ ଆଂତରିକତା ଓ ବନ୍ଧୁତାକୁ, ମାଂସାଶୀ ପ୍ରାଣୀର ଅକୁଂଠ ନେଇ ଯିବ, ଛଂଦା ଗୋପନର ମାୟା ଯିବ ରୂପାଂତର କଲା କେଉଁ ଦୁର୍ଗଳିତା ।

ବର୍ତ୍ତମାନ ମଧ୍ୟାହ୍ନର ଖରା ଜଳୁଛି । ଜଳୁଛି ଆମ ସଂଚିତ ସ୍ୱରୂପତ୍ୱର ଶଂଖ । ଜଳୁଛି ଆମ ଗର୍ବ ଓ ଅଭିମାନର ଘୁଙ୍ଗୁର, ଓ ଆମ ସାର୍ଥକତାର ଅଗଣାରେ ତୋଳିଥିବା ଏକ ଅଦ୍ଭୁତ ମିନାରର ସ୍ୱପ୍ନ ! ବର୍ତ୍ତମାନ ଆମ ପୋଷାକ ଜଳୁଛି । ହୁଏତ ଅଳ୍ପ ବିଳଂବରେ ଝଲସିବ ଆମ ଜଉଡ଼ିଆ ପିତୃତ୍ୱର ସ୍ନେହ ! ହୁଏତ ପ୍ରାଣଭରି କାନ୍ଦିବ ଏକ ସ୍ନେହଶୀଳ ମୂର୍ଚ୍ଛାର ଅବହେଳିତ ଆତ୍ମା । ଏବଂ ହୁଏତ ଏମାନେ ବେଳେ ଏକ ପରିଚିତ ଚୋରାସ୍ତାରେ ମଧ୍ୟାହ୍ନର ଖରାକୁ ଗିଳିବେ ଏମାନେ !

ବହୁ ସଂଘ, ସଂଘର୍ଷ, ଓ ସଂବିଧାନର ଖସଡ଼ା ; ଛଂଦା ମତ, ଅଭିମତ ଓ ସଂଘାତ୍ମକ ଯୋଜନାରେ ହସିବ ଏକ ପକ୍ଷାଘାତ ଚେତନା ! ନିର୍ଭୀକ · ବ୍ୟକ୍ତିତ୍ୱରର

ବାଇଶି

ଦେହରେ ଓ ଅଧୀର ଅନର୍ଥର ସକଳ ହିଂସାକ୍ରୁର ନଖରେ ଲୁଣ୍ଠିତ ଧର୍ଷିତ ସକାଳର ସ୍ୱପ୍ନ ; ଓ ମଧ୍ୟାହ୍ନର ସୂର୍ଯ୍ୟର ଆଗିରେ ଉତ୍ତପ୍ତ ନୃଶଂସ କଳଙ୍କ ଉର୍ବଶୀ !

ବର୍ତ୍ତମାନ ମଧ୍ୟାହ୍ନର ଝଡ଼ ଓ ଶିଥିଳର ଉତ୍ଥାନରେ ଅବ୍ୟାହତ ଅସଂଗତିର ସଂକ୍ରମଣ । ବାଦ ବିତଣ୍ଡାବାଦର ଉନ୍ମୁକ୍ତ ମୁଖଉତ୍ସରେ, ଦାନ ଓ ପ୍ରତିଦାନର ଅନୁମୋଦିତ ନାଟକରେ ବିଭକ୍ତ ମାନବିକତାର ନର୍ତ୍ତନ ଦୋହଲୁଛି ଶାଳୀନତାରେ ! ଶାସକ ଓ ଶାସିତର ମାର୍ମିକ ସଂପର୍କିତ ରାଜପଥରେ କ୍ଷୁଧାର ସ୍ଲୋଗାନ ! ପ୍ରୀତି ଓ ଚକ୍ରର ଘାତର ନେଇ ମଧ୍ୟାହ୍ନର ଖଣ୍ଡ ଆଜି ଜଳୁଛି !

ବର୍ତ୍ତମାନ ପଥ ଭୁଲିବାର ସୌଖିନତାରେ ଆମେ, ତୁମେ ଓ ସମସ୍ତେ ପାରଂଗମ ! ସଂଭ୍ରମ ଭଙ୍ଗାର ସ୍ପିଡ ଆଜିର ପ୍ରହର !

ନିଆଁ ଭିଜି ଜଳୁଛି ରାଜପଥ । ଭୂତ ଭିଜି ଦେହ ବାନ୍ଧି ଲମ୍ବା ଲଂବ ଲଂବ ଅନୁଭୂତି ସ୍ଲୋଗାନ ଝୁଲୁଥିବା ହାତ ! ଓ କମାରଶାଳର ନିଆଁ ଚୁଲିରୁ ଗୀତ ଗାଉଛି ଶାଣିତ ବର୍ଚ୍ଛା ଓ କୁନ୍ତ ।

ହେ ମୋର ମଧ୍ୟାହ୍ନର ଖରା ! ତୁମର ଆଶୀର୍ବାଦର ଜ୍ୱାଲାରୁ ଓ ନିର୍ମମ ଆନ୍ତରିକତାର ମୋହରୁ ବଞ୍ଚାଇ ଦିଅ ଆମକୁ । ହେ ମୋର ଜ୍ୱଳନ୍ତ ମଧ୍ୟାହ୍ନର ନିଆଁର ଉର୍ବଶୀ ! ତୁମର ତ୍ରିଶୂଳ ଦାଢ଼ର ଦୌରାତ୍ମ୍ୟରୁ ଆମକୁ ରକ୍ଷାକର !!

ବର୍ତ୍ତମାନ ନିଆଁର ମଧ୍ୟାହ୍ନ ।
ଓ ଆମେ ସବୁ ବନାଗ୍ନି ପରି
ଜଳୁଛୁ ନିର୍ବିକାର ଈର୍ଷାରେ ।।

ଡେଇଣ

ତିନି

ବର୍ତ୍ତମାନ ଉଦାରତାର ମାଦଳରେ କ୍ଷୁଦ୍ରତାର ଘୁଂଗୁର ଓ କରୁଣାର ଅଶ୍ରୁରେ ପ୍ଲାବିତ ଶୈଶବ ସଂଧ୍ୟା !

ଦିନାଂତର ମୌନତା କାଁଦୁଛି ଓ କାଁଦୁଛି ନିଜ ବେଦନାର ଗ୍ଲାନି । ବର୍ତ୍ତମାନ ବନ୍ୟାର ସ୍ପଂଦନ ଓ ଚେତନାର ପ୍ରସ୍ରବଣରେ ଅକଳଂକ ଜୀବନର ପାର୍ବଣ । ସ୍ମୃତି ଅରୁଣିମାର ଓଠରେ ଯୁଗନଦ୍ଧ ମୂର୍ତ୍ତିର ମହିମା, ଓ ମୌନତାର ସ୍ୱର ବିଲଂବିତ ।

ଦୁର୍ନିବାର କାମନା ମୃତ ? ପ୍ରୀତିପ୍ରଦ ପ୍ରଲୋଭନର ଆଲିଂଗନରୁ ଆମେ ମୁକ୍ତ ଅନିଶ୍ଚିତ ଓ କ୍ଷମାହୀନ ଦୁର୍ବଳତାର ସତର୍କତାରୁ, ଓ ଲଜ୍ଜାହୀନ ଅକୁଂଠ ନଗ୍ନତାରୁ କ୍ରମଶଃ ଆମର ନିଷ୍କୃତି ! ବିକଳିତ ନିଷ୍ଠୁରତାରୁ ମୁକ୍ତ ଆମ ପ୍ରବଂଚିତ ମନ । ଜୟ ଓ ପରାଜୟର ଗ୍ଲାନି କିଂବା ଉଦ୍‌ବିଗ୍ନ ଭୟ ଓ ସରମର ବ୍ରୀଡ଼ାରୁ ବଂଚିବାର ସୁଂଦର ଅଭିନୟ ଆମର !

ଏକାଂତ ଆପଣାର ଦସ୍ତା ! ସମସ୍ତ ବିଶୃଂଖଳ ବ୍ୟକ୍ତିତ୍ୱର ପୁଂଜିକୁ ଗର୍ଭସ୍ଥ କରି ଏକ ପ୍ରଚଂଡ଼ ପ୍ରଶାଂତି ଆଜି କାମ୍ୟ । ଭଂଗା ଓ ନିଃସଂଗ ଅଭ୍ୟାସରେ ମୁଁ ତୁମରି ପ୍ରାର୍ଥନାରେ ନିମଗ୍ନ ।

ଚବିଶ

ବର୍ତ୍ତମାନ୍ ଶାନ୍ତି ଚଂଚ୍ରରେ ମଧ୍ୟାହ୍ନ ବର୍ଣ୍ଣ । ଓ ନିଆଁର ସମୁଦ୍ରରେ ଶୀତଳତାର ରୌଦ୍ର ! ଚେତନାଙ୍କ ଧ୍ୟାନସ୍ଥ । ନୀରବ ହାଓ୍ବାର ଦେହରେ ଅନାଗତର ସ୍ୱରଲିପି । ଏବଂ ଶାମୁକାମାନଂକର ଶୋଭାଯାତ୍ରା ।

ପ୍ରାଣର ମୃଣାଳରେ ଶବ୍ଦର ଆବେଗ । ପ୍ରଦୀପ୍ତ ଶିଖାରେ ଦୁଃଖର ସମର୍ପଣ, ଓ ଉପତ୍ୟକାର ଅନ୍ଧାରରେ ଫୁଲର ମେଳା । ବର୍ତ୍ତମାନ ଫସଲର ଗୀତ, ଏବଂ ପ୍ରତି-ଧ୍ୱନିର ଧମନୀରେ ଜୀବନର ଗୁଂଜନ !

ବିବକ୍ତ ମନ ଓ ରକ୍ତାକ୍ତ ସ୍ୱପ୍ନ । ସ୍ମୃତିର ପଦ୍ମରାଗ ଓ ମୂର୍ଚ୍ଛନାର ମୂର୍ଚ୍ଛା ! ଓ ଆମ ଦରମଲ୍ଲ ସାଂତ୍ୱନାର ରଂଗ ! ତୁମମାନଂକୁ ଅଭୂମ ପ୍ରଣାମ ।

—

ହେ ଆମ ଇଂଦ୍ରିୟାତୀତ ନିବିଷ୍ଟ ଯଂତ୍ରଣାର ଶୋଣିତ ! ବନ୍ଧ୍ୟା ଓ ଉଦାସ ଚେତନାକୁ ମାତୃତ୍ୱର ଆଶୀର୍ବାଦ ଦିଅ !

ବର୍ତ୍ତମାନ ମଧ୍ୟରାତ୍ରି ଓ ମଧ୍ୟାହ୍ନର ଖରା ହସଂତୁ ; ସକାଳର ସ୍ନିଗ୍ଧ ସ୍ପର୍ଶ ନେଇ ସ୍ଥବିରତାର ବେଦୀରେ ସଂଧ୍ୟା ଧ୍ୟାନସ୍ଥ । ଓ ପଥରର ଗ୍ରନ୍ଥିରେ ବରଫର ସ୍ରୋତ ।

ଓଁ ପ୍ରାଣବୀଜ !

ଓଁ ମୃତ୍ୟୁବୀଜ !!

ଓଁ ଅନୁଶୋଚନାର ବୀଜ !!! ଓଁ —

# ଉପସଂହାର

ବରକୋଳି ପତ୍ର ଓ ଦୁବଘାସର ଅଭିଷେକ ! ଛନ୍‌ଦକ ପ୍ରତ୍ୟାଶା ଓ ପ୍ରତିଦାନର ପୁନଃ ପୁନଃ ନମଂସନ । କ୍ଷୁଧା ଓ ଅନ୍ତର୍ଦାହଶୀତଳତାର ପୁନଃ ପୁନଃ ଆହ୍ୱାନର ଆବୃତ୍ତି !

ବର୍ତ୍ତମାନ ଲତା, ଦଂଡ ଓ ମୁହୂର୍ତ୍ତମାନଂକର ପ୍ରାର୍ଥନା ଓ କୁଳ ସହସ୍ର ବର୍ଷର ସମବେତ ଯାତ୍ରାର ଜୟଧ୍ୱନି ! ଆଗରେ ମହାକାଳର ଦର୍ପିତ ଦୁର୍ନିରୋଧ ଏବଂ ଗୁଳି ଗୁଳନାର ଅଓ୍ୱାଜ ସ୍ପଷ୍ଟ !!

ମୋର ପୁତ୍ର ଓ କନ୍ୟାମାନେ ମଂଦିରରୁ ଫେରିଲେ । ଘଂଟାଧ୍ୱନି ଓ ପୋଷା ବଳେଇର ହୁଙ୍କାରେ ବତୁରିଗଲେ ସେମାନେ । ଗଛରେ ବକୁଳ, ଆମ୍ବ, ନେଓ୍ଟା, ଡିମିରି ଓ ଗୁଆ, ନଡ଼ିଆମାନଂକର ମିଳିତ ଶୋକଶୋଭା !! ସେମାନଂକ ଜନ୍ମ ସାର୍ଥକ ହେଲା !

ହେ ସମ୍ରାଟ୍ ! ହେ ସ୍ୱୟଂସଂପୂର୍ଣ୍ଣ ସତ୍ତାର ମାଂଗଳିକ ! ହେ ମୋ ଅଂଧ ନିର୍ମମ ବ୍ୟକ୍ତିତ୍ୱର କ୍ରମଶଃ ଉତ୍ତରଣ !! ତୁମମାନଂକର ଜୟ ହେଉ । ଜୟ ହେଉ ମୋ ଦସ୍ୟୁମାର ଧାରୁଆ ଅଂଧାରର ଓ ଜୟ ହେଉ ମୋ ଅକଳଙ୍କ ମମତାର !!

ଛବଣ

ବର୍ତ୍ତମାନ ବୁଦ୍ଧଘୋଷର ଅଭିଷେକ ।
ଓ ମୋ ସଂସ୍କୃତ ଚେତନାରେ
ଝାଉଁର ମର୍ମର ।

ବର୍ତ୍ତମାନ ମୋର ପୁତ୍ର କନ୍ୟାମାନେ ପ୍ରସାଦ ସେବନରେ ବ୍ୟସ୍ତ । ଏବଂ ଏକ ସ୍ମୃତିର ଉପକ୍ରମଣିକା ସେମାନେ ମୁଖସ୍ଥ କରୁଛନ୍ତି ! ବର୍ତ୍ତମାନ ଉତ୍ସବର ଗୁମାନ ଏବଂ ନସର ମୃଦୁ ସ୍ପର୍ଶ ।

ଉଦାରତାର ଶଂଖ ବାଜିଲା । ବାଜିଲା କରୁଣାର ଭେରୀ ! ତୁମମାନଂକର ଜୟ ହେଉ ! ଜୟ ହେଉ କୋଦାଳର ଓ ଦାଆର ; ଏବଂ ଆମ ଅଂତରଂଗ ପୁତ୍ର-କନ୍ୟାମାନଂକର !!

**ସ୍ୱଭାବଣ**